ବିଶ୍ୱସାହିତ୍ୟ ଗ୍ରନ୍ଥମାଳା

# ଜାପାନ ଦେଶର କାହାଣୀ





ଗ୍ରନ୍ଥମନ୍ଦିର

ପ୍ରକାଶକ
ମନୋଜ କୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର,** ବିନୋଦବିହାରୀ, କଟକ-୨
ମୁଦ୍ରକ :
ଦୁର୍ଗା ପ୍ରେସ୍, କଟକ-୧
ନୂତନ ପରିମାର୍ଜିତ ସଂସ୍କରଣ : ଜାନୁୟାରୀ, ୧୯୯୭
ମୂଲ୍ୟ : ଟ ୨୦-୦୦

# ସୂଚୀ

# ଉରଶିମାର ଭାଗ୍ୟ

ଜାପାନର ରାଜଧାନୀ ଟୋକିଓଠୁଁ ବହୁତ ଦୂରରେ, ସମୁଦ୍ର କୂଳରେ ଗୋଟିଏ ସାନ ଅଥଚ ସୁନ୍ଦର ଗାଁ । ଗାଁଟିର ନାଁ ଓଲାଗା । ଗାଁଲୋକଙ୍କର ଦୁଇଟି ବୋଲି ପେସା—ଚାଷକାମ ଆଉ ସମୁଦ୍ରରୁ ମାଛ ଧରିବା । ପ୍ରତିଦିନ ସକାଳୁ ଉଠି ଦଳେ ଗ୍ରାମବାସୀ ପାହାଡ଼ ତଳେ ଥିବା ନିଜନିଜର ଧାନ ବା ମକା ବିଲର ହେପାଜତ କରିବାକୁ ବାହାରିଯାଆନ୍ତି ଏବଂ ବାକି କେତେଜଣ ଗୋଟାଏ ଗୋଟାଏ ସାନ ଡଙ୍ଗାରେ ନିଜନିଜର ଜାଲ ଧରି ଭାସିଯାଆନ୍ତି ସୀମାହୀନ ସମୁଦ୍ରର ନୀଳ ତରଙ୍ଗ ଭିତରକୁ—ସାନବଡ଼ ନାନା ଜାତିର ମାଛ ଧରିବା ପାଇଁ । ସାଙ୍ଗରେ କିଛି ପିଇବା ପାଣି ଓ ଖଣ୍ଡେ ଲେଖାଁ ପୋଡ଼ପିଠା ଧରି ଦିନଟା ସାରା ସେମାନେ ସମୁଦ୍ରର ଏଠି ସେଠି ଜାଲ ପକାଇ ମାଛଧରନ୍ତି । ସୂର୍ଯ୍ୟାସ୍ତ ସମୟକୁ ଗୋଟି ଗୋଟି ହୋଇ ମାଛ ବୋଝେଇ ଡଙ୍ଗା ଫେରି ଆସିଲା ବେଳକୁ କୂଳରେ ଠୁଳହୋଇଥାନ୍ତି ଆଖପାଖ ଅଞ୍ଚଳର ଲୋକେ ମାଛ କିଣିବା ପାଇଁ । ସେମାନଙ୍କୁ ମାଛ ବିକିସାରି, ବଳକା ମାଛତକ ନିଜ ଖାଇବା ପାଇଁ ଧରି ରାତି ଘଡ଼ିଏ ବେଳକୁ ସେମାନେ ଯେ ଯାହା ଘରେ ପହଞ୍ଚନ୍ତି । ଏଇପରି ସୁଖ ଆଉ ଶାନ୍ତିରେ ସେମାନଙ୍କର ଜୀବନ କଟୁଥାଏ ।

କୋଡ଼ିଏ ବର୍ଷର ବଳବାନ୍ ଯୁବକ ଉରଶିମା ବି ପ୍ରତିଦିନ ସକାଳୁ ଉଠି ନିଜର ଡଙ୍ଗା ଓ ଜାଲ ଧରି ସମୁଦ୍ରକୁ ମାଛ ମାରି ଯାଏ । ତାର ବାପା ଯାଆନ୍ତି ନିଜ ଧାନବିଲକୁ କାମ କରିବା ପାଇଁ, ଆଉ ରନ୍ଧାବଢ଼ା ଆଦି ଘରର ଯାବତୀୟ କାମ କରେ ତାର ମା ଆଉ ସାନ ଭଉଣୀ କିମା । ଉରଶିମା ବଡ଼ ଦୟାଳୁ ଯୁବକ । ତା ଛଡ଼ା ତାର ସ୍ୱଭାବଟା ବି ବଡ଼ କୌତୂହଳୀ—ସେ ସବୁ କଥା ଜାଣିବାକୁ ଚାହେଁ । ଏଇ କୌତୂହଳ ଯୋଗୁଁ ସେ ସମୟସମୟରେ ଅତି ଦୁର୍ଗମ ଅଞ୍ଚଳକୁ ମାଡ଼ିଯାଏ । ଦିନେ ପୂର୍ଣ୍ଣିମା ରାତିରେ ଉରଶିମା ସମୁଦ୍ର କୂଳରେ ବୁଲୁ ବୁଲୁ ଗାଁଠୁଁ ବହୁଦୂରକୁ ଚାଲିଆସିଲା । ନିର୍ଜନ ଜାଗା—ଜହ୍ନ ଆଲୁଅରେ ହସି ଉଠୁଛି । ଖୁସିମନରେ ଉରଶିମା ଗୁଣୁଗୁଣୁ ହୋଇ ଗୀତଟିଏ ଆରମ୍ଭ କରୁ କରୁ ହଠାତ୍ ଦେଖିଲା ଖଣ୍ଡେ ଦୂରରେ ବାଲି ଭିତରେ କ'ଣ ଗୋଟାଏ ଚକ୍ ଚକ୍ ଦିଶୁଛି । ଗୀତ ବନ୍ଦ କରି ସେଠି ପହଞ୍ଚି ଉରଶିମା ଦେଖିଲା ଯେ ଗୋଟାଏ

ଅଦ୍ଭୁତ ସୁନ୍ଦର ମାଛ ବାଲି ଗାତରେ ପଡ଼ିଯାଇ ଛଟପଟ ହେଉଛି । ଏପରି ଧରଣର ମାଛ ସେ ତା ଜୀବନରେ ଆଗରୁ କେବେ ଦେଖିନଥିଲା । ମାଛଟାର କାତିଗୁଡ଼ାକ ଖାଣ୍ଟି ସୁନା ପରି ଆଉ ତାର ଆଖି ଦି'ଟା ପ୍ରବାଳପରି ଟକ୍‌ଟକ୍ ନାଲି । ବଡ଼ ଆଗ୍ରହରେ ମାଛଟାକୁ ଟେକିଆଣି ଉରଶିମା ସେ'ଟିକୁ ଭଲ ଭାବରେ ଦେଖିବାକୁ ଲାଗିଲା । କିଛି ସମୟ ପରେ ସେ ବୁଝିପାରିଲା ଯେ ମାଛଟା ଅନ୍ୟାନ୍ୟ ମାଛ ପରି ଛଟିପିଟି ନହୋଇ,ମଣିଷ ପରି କେମିତି ଗୋଟାଏ କାତର ଦୃଷ୍ଟିରେ ତା ଆଡ଼କୁ ଚାହିଁରହିଛି । ତାର ଏଇ କାତର ଚାହାଣୀ ଦେଖି ଉରଶିମାର ମନ ଦୟାରେ ପୂରିଗଲା । ନିଜ ଲୋଭକୁ ସଂଯତ କରି ମାଛଟିକୁ ପୁଣି ସମୁଦ୍ରରେ ଛାଡ଼ି ଦେବା ପାଇଁ ସେ ମନ ସ୍ଥିର କଲା । ଖୁବ୍ ସାବଧାନରେ ମାଛଟିକୁ ଆଣି ସମୁଦ୍ର ପାଣିରେ ଛାଡ଼ିବା ମାତ୍ରେ ଉରଶିମା କାବା ହୋଇ ଦେଖିଲା ଯେ ମାଛଟା ବଦଳରେ ଗୋଟିଏ ଅପୂର୍ବ ସୁନ୍ଦରୀ ଝିଅ ତା ଆଗରେ ଛିଡ଼ା ହୋଇଛି । ଭୟ ଓ ବିସ୍ମୟରେ ତା ପାଟିରୁ ପଦେ ହେଲେ କଥା ବାହାରିଲା ନାହିଁ । ତାର ଏପରି ଅବସ୍ଥା ଦେଖି ଝିଅଟି ଟିକିଏ ହସି ଦେଇ କୋମଳ ସ୍ୱରରେ କହିଲା, "ଉରଶିମା, ତୁମକୁ ମୁଁ ବହୁତ ଦିନରୁ ଜାଣିଛି । ମୁଁ ହେଉଛି ସମୁଦ୍ର ରଜାଙ୍କର ଝିଅ । ମୁଁ ସମୟସମୟରେ ମାଛ ରୂପ ଧରି ସମୁଦ୍ର ପାଣିରେ ଖେଳବୁଲ କରିବା ସମୟରେ ତୁମକୁ ଦେଖେ । ଆଜି ମଧ୍ୟ ମୁଁ ମାଛ ରୂପ ଧରି ଖେଳୁଥିବା ସମୟରେ ହଠାତ୍ ଗୋଟାଏ ଢେଉ ମତେ ଝାମ୍ପମାରି ନେଇଗଲା । ବହୁତ ଛଟିପିଟି ହୋଇ ମୁଁ ତାର ଥଣ୍ଟରୁ ଖସି ଏଇ ବାଲି ଭିତରେ ପଡ଼ିଗଲି । ପାଣି ଭିତରେ ନ ପଶିଲେ ମୋର ରୂପ ବଦଳାଇବା ଅସମ୍ଭବ । ତେଣୁ ମୁଁ ଭାବୁଥିଲି ଯେ ଏଇଠି ବୋଧହୁଏ ମୋର ପ୍ରାଣ ଚାଲିଯିବ । କେବଳ ତୁମରି ଦୟା ଯୋଗୁଁ ମୁଁ ମୋର ଜୀବନ ଫେରିପାଇଲି । ତୁମେ ମୋ ସାଙ୍ଗରେ ସମୁଦ୍ର ତଳେ ଥିବା ଆମ ରାଜ୍ୟକୁ ଚାଲ; ମୋର ବାପା ତୁମକୁ ଦେଖିଲେ ଖୁବ୍ ଖୁସୀ ହେବେ ।"

ଚମକିପଡ଼ି ଉରଶିମା କହିଲା—"କ'ଣ କହୁଛ ତୁମେ ! ତୁମ ରାଜ୍ୟକୁ ମୁଁ ଯିବି କିପରି ? ସେଠି ପହଞ୍ଚିବା ପୂର୍ବରୁ ତ ମୋର ପ୍ରାଣ ଛାଡ଼ିଯାଇଥିବ ।"

ପୂର୍ବପରି ହସି ହସି ଝିଅଟି ଉତ୍ତର ଦେଲା—"ତୁମେ ସେ କଥା ଚିନ୍ତା କରନାହିଁ; ସେ ଦାୟିତ୍ୱ ମୋର । ଏଥର ତୁମେ ଦୟା କରି ତୁମ ଆଖି ଦିଟା ବୁଜିଦିଅ—ମୁଁ ତୁମକୁ ଏହିକ୍ଷଣି ଆମ ରାଜ୍ୟକୁ ନେଇଯିବି ।"

ମନ୍ତ୍ରମୁଗ୍ଧ ପରି ଉରଣିମା ତାର ଦୁଇ ଆଖି ବନ୍ଦକଲା । ତା ପରେ କ'ଣ ଯେ ଘଟିଲା ସେ କଥା ତାକୁ ଅଜଣା । ମାତ୍ର ଟିକେ ପରେ ସେ ଶୁଣିଲା ଯେ ସେଇ ଝିଅଟି କହୁଚି "ଆମେ ଆମ ରାଜ୍ୟରେ ପହଞ୍ଚିଗଲେଣି । ଏଥର ତୁମେ ଆଖି ଖୋଲିଦିଅ ।" ଆଖି ଫିଟାଇ ଉରଣିମା ଦେଖିଲା ଯେ ସେ ଗୋଟାଏ ଅପୂର୍ବ ଦେଶରେ ଆସି ପହଞ୍ଚିଛି । ମୁଣ୍ଡ ଉପରେ ସ୍ୱଚ୍ଛ ପରି ରହିଥିବା ସମୁଦ୍ର ଭିତରୁ ଏକ ଉଜ୍ଜ୍ୱଳ ନୀଳ ଜ୍ୟୋତି ବାହାରୁଚି; ଚାରିପଟେ ପ୍ରବାଳର ଗଛ ଲତା ଏବଂ ତହିଁରେ ମୁକ୍ତା ଓ ହୀରାର ଫୁଲ ଫଳ । ଗଛର ପତ୍ରଗୁଡ଼ାକ ସୁଦ୍ଧା ଏକ ପ୍ରକାର ଶାଗୁଆ ରଙ୍ଗର ପ୍ରବାଳରେ ଗଢ଼ା । ଚାରିପଟେ କେତେ ମାଛ ଓ କେତେ ମଗର, କୁମ୍ଭୀର, ମାତ୍ର କେହି କାହାକୁ ଆକ୍ରମଣ କରୁନାହାନ୍ତି ।

ଏ ସବୁ ଆଶ୍ଚର୍ଯ୍ୟ ଦୃଶ୍ୟ ଦେଖି ଦେଖି ରଜା ଝିଅ ସଙ୍ଗରେ ଉରଣିମା ରାଜପ୍ରାସାଦରେ ପହଞ୍ଚିଲା । ନାନା ବର୍ଣ୍ଣର ପ୍ରବାଳରେ ଗଢ଼ା ବିରାଟ ରାଜପ୍ରାସାଦ କାନ୍ଥରେ ବାଡ଼ରେ ହୀରା ମୁକ୍ତାର କେତେ ପ୍ରକାର ନକ୍ସା । ନିଦା ସୁନାରେ ଗଢ଼ା ଗୋଟାଏ ଉଚ୍ଚ ସିଂହାସନରେ ବସିଥିଲେ ସମୁଦ୍ରର ରାଜା । ନିଜ ଝିଅକୁ ଦେଖିବା ମାତ୍ରେ ସେ ଆନନ୍ଦରେ କହିପକାଇଲେ—"ଆଲୋ ମା ! ସକାଳୁ ଏତେବେଳ ଯାଏଁ କୁଆଡ଼େ ଯାଇଥିଲୁ ? ତତେ ଖୋଜି ଖୋଜି କେଉଁଠି ହେଲେ ନପାଇବାରୁ ଆମ ସମସ୍ତଙ୍କ ମନ ବଡ଼ ବ୍ୟସ୍ତ । ତୋ ସାଙ୍ଗରେ ଇଏ କାହାକୁ ଆଣିଚୁ ?"

ରଜାଝିଅ ନିଜ ବାପାଙ୍କ ନିକଟକୁ ଯାଇ ତାର ବିପଦ କଥା ଓ ଉରଣିମା ଯୋଗୁଁ କପରି ସେ ବଞ୍ଚିଗଲା ସେ ସବୁ ବର୍ଣ୍ଣନା କଲା । ତା କଥା ଶୁଣିସାରି ରାଜା କହିଲେ—"ଉରଣିମା ! ତୁମେ ଖୁବ୍ ଭଲ ମଣିଷ । ତୁମରି ଯୋଗୁଁ ମୋର ଏକମାତ୍ର ଝିଅ ମରଣ ମୁହଁରୁ ରକ୍ଷାପାଇଗଲା । ତୁମେ ଯାହା ମାଗିବ ମୁଁ ତୁମକୁ ନିଶ୍ଚୟ ଦେବି । ତାଛଡ଼ା ଆମେ ଅନୁରୋଧ କରୁଚୁ ଯେ ତୁମେ ବର୍ତ୍ତମାନ ନିଜ ଘରକୁ ଫେରିନଯାଇ ଆମ ଦେଶରେ କିଛିଦିନ ରୁହ ।"

ଏପରି ସମୟରେ ରଜାଝିଅ ତା ବାପାଙ୍କୁ କ'ଣ ଗୁନ ଗୁନ କରି କହିଲା । ତା କଥା ଶୁଣି ରଜା ପୁଣି ଉରଣିମାକୁ କହିଲେ—"ମୋ ଝିଅ ତୁମକୁ ବାହା ହେବା ଲାଗି ଇଚ୍ଛା କରୁଚି । ତୁମେ କଣ ଏ ପ୍ରସ୍ତାବରେ ରାଜିଅଛ ?" ରଜାଝିଅର ରୂପ ଓ ବ୍ୟବହାର ଦେଖି ଉରଣିମା ତ ପୂର୍ବରୁ ମୁଗ୍ଧ ହୋଇ ଯାଇଥିଲା । ତାପରେ ଏଇ ଅପୂର୍ବ ଦେଶ ଓ ଅସୁମାରି ଧନରତ୍ନ ଦେଖି ତାର ଆଖି ଖୋସିହୋଇଗଲା । ରଜାଝିଅକୁ ବାହାହେଲେ ଏ ସବୁର ମଧ୍ୟ ସେ ହିଁନେ

ମାଲିକ ହୋଇପାରିବ । ତେଣୁ ଉରଶିମା ସଙ୍ଗେ ସଙ୍ଗେ ବିବାହ ପ୍ରସ୍ତାବରେ ନିଜ ସମ୍ମତି ଜଣାଇଦେଲା ।

ମହା ଧୂମ୍‌ଧାମ୍‌ରେ ରଜାଝିଅ ସଙ୍ଗରେ ଉରଶିମାର ବିବାହ ହୋଇଗଲା । ବିଭାଘର ପରେ ପ୍ରାୟ ତିନିମାସ ଉରଶିମା ନିଜ ଶ୍ୱଶୁର ଘରେ ରହିବା ପରେ, ହଠାତ୍ ଦିନେ ତାର ନିଜ ଘର, ନିଜ ବାପ ମା, ଭାଇ ଭଉଣୀଙ୍କ କଥା ମନେ-ପଡ଼ିଲା । କେତେଦିନ୍ରୁ ସେମାନଙ୍କୁ ସେ ଦେଖିନାହିଁ । ପୁଣି ସେମାନେ ମଧ୍ୟ ଏତେଦିନ ଯାଏ ତାକୁ ନଦେଖି ବା ତାର କୌଣସି ଖବର ନପାଇ, ସେ ମରିଯାଇଚି ଭାବି ନିଶ୍ଚୟ ବଡ଼ ବ୍ୟସ୍ତ ହେଉଥିବେ । ତେଣୁ ଅତିଶୀଘ୍ର ସେମାନଙ୍କ ସଙ୍ଗେ ଥରେ ଭେଟ ହେବା ଲାଗି ତାର ମନ ବଡ଼ ଛାଟି ପକାଇ ହେଲା । ପ୍ରଥମେ କିଛିଦିନ ସେ ନିଜ ମନର ଭାବ ପ୍ରକାଶ କଲାନାହିଁ, ମାତ୍ର ଶେଷରେ ନିଜକୁ ସମ୍ଭାଳି ନପାରି ଦିନେ ସ୍ତ୍ରୀକୁ ସେ କହିଲା—“ତୁମ ରାଜ୍ୟରେ ମୁଁ ଖୁବ୍ ସୁଖ ଓ ଆନନ୍ଦରେ ରହିଛି । ତୁମର ବାପା, ମା ଓ ତୁମେ ମତେ ଖୁବ୍ ସ୍ନେହ କରୁଚ । ତଥାପି ମୋ ନିଜ ବାପ ମା, ଭାଇଭଉଣୀଙ୍କ ପାଇଁ ମୋର ମନ ବଡ଼ ବ୍ୟାକୁଳହେଉଛି । ସେମାନେ ବି ଏତେଦିନ ମତେ ନଦେଖି ବଡ଼ ବ୍ୟସ୍ତ-ହେଉଥିବେ । ତେଣୁ, ତୁମେ କିଛି ଉପାୟ କଲେ ମୁଁ ଥରେ ଯାଇ ସେମାନଙ୍କୁ ଭେଟି ଫେରିଆସନ୍ତି ।”

ତା କଥା ଶୁଣି, କିଛି ସମୟ ଚୁପ୍ ରହି ରଜାଝିଅ କହିଲା—“ଦେଖ, ମୋର ମନ କହୁଛି ଯେ ଏଠୁ ବାହାରିବା ପରେ ପରେ ତୁମେ ଖୁବ୍ ବିପଦରେ ପଡ଼ିବ । ମାତ୍ର ତୁମ ମନର ବ୍ୟସ୍ତତା ବି ମୁଁ ବୁଝିପାରୁଚି । ଠିକ୍‌ଅଛି, ମୁଁ କାଲି ସକାଳୁ ତୁମ ଯିବାର ସବୁ ବନ୍ଦୋବସ୍ତ କରିଦେବି । ତୁମେ ସେଠି ବେଶିଦିନ ରହିବ ନାହିଁ । ଖୁବ୍ ଶୀଘ୍ର ପୁଣି ମୋ ପାଖକୁ ଫେରିଆସିବ ।”

ପରଦିନ ସକାଳୁ ଉରଶିମା ଯିବାପାଇଁ ଗୋଟାଏ ଡଙ୍ଗା ପ୍ରସ୍ତୁତ ହେଲା । ନିଜ ଦେଶକୁ ନେଇଯିବା ଲାଗି ରଜା ତାକୁ ଅନେକ ହୀରା, ମୁକ୍ତା ଇତ୍ୟାଦି ଦେଲେ । ସେ ବାହାରିବା ସମୟରେ ରଜାଝିଅ ନିଜ ସିନ୍ଦୁକ ଭିତରୁ ଗୋଟିଏ ଶାମୁକାରେ ତିଆରି ସାନ ବାକ୍‌ସଟିଏ ଆଣି ଉରଶିମା ହାତରେ ଦେଇ କହିଲା—“ଏ’ଟିକୁ ସବୁବେଳେ ନିଜ ପାଖରେ ରଖିଥିବ କିନ୍ତୁ ସାବଧାନ, ଏଟା କଦାପି ଖୋଲିବ ନାହିଁ । ଖୋଲିଲେ ତୁମେ ଆଉ କେବେହେଲେ ମୋ ପାଖକୁ ଫେରି ଆସିପାରିବ ନାହିଁ ।”

ଉରଣିମା କାଳକନ୍ୟାକୁ ସେହିପରି ପ୍ରତିଶ୍ରୁତି ଦେଇ ନିଜ ଡଙ୍ଗାରେ ଚଢ଼ିବା ମାତ୍ରେ, ଡଙ୍ଗାଟି ସମୁଦ୍ରଗର୍ଭରେ ପୃଥିବୀ ଆଡକୁ ଆଗେଇ ଚାଲିଲା । ଡଙ୍ଗାଟି ଦିଶୁଥିବା ଯାଏ ରାଜାଝିଅ ସେଠି ଛିଡ଼ାହୋଇ ରହିଲା । ଡଙ୍ଗାଟି ଅଦୃଶ୍ୟ ହୋଇଯିବା ପରେ ଲୁଗା କାନିରେ ଲୁହ ପୋଛୁ ପୋଛୁ ସେ ନିଜ ନଅରକୁ ଫେରିଗଲା । ଉରଣିମା ମଧ୍ୟ ଡଙ୍ଗାରେ ବସି ବସି ନିଜ ସ୍ତ୍ରୀ କଥା, ପାତାଳ ରାଜ୍ୟର ଅପୂର୍ବ ସୌନ୍ଦର୍ଯ୍ୟ ଓ ଅସୁମାରି ଧନରତ୍ନ କଥା ଭାବୁ ଭାବୁ କ୍ରମେ ଡଙ୍ଗାଟି ଆସି ଉରଣିମାର ଗାଁପାଖ ସମୁଦ୍ର କୂଳରେ ପହଞ୍ଚିଗଲା । ଗାଁ ପାଖରେ ପହଞ୍ଚିବା ମାତ୍ରେ ଉରଣିମା ମନଖୁସିରେ ଡଙ୍ଗାରୁ ଡେଇଁପଡ଼ି ଡଙ୍ଗାଟାକୁ କୂଳ ଉପରକୁ ଟାଣିଆଣି ଗାଁ ଭିତରେ ପଶିଲା । ଗାଁ ପାଖରେ ପହଞ୍ଚି ଉରଣିମା ଆଶ୍ଚର୍ଯ୍ୟ ହୋଇ ଦେଖିଲା ଯେ ମାସ ତିନିଟାରେ ଗାଁର ଚେହେରା ଏକାବେଳକେ ଓଲଟପାଲଟ ହୋଇଯାଇଚି ଏବଂ ଜଣେହେଲେ ଚିହ୍ନା ଲୋକ ଦିଶୁ ନାହାନ୍ତି । ନିଜ ଘର ପାଖରେ ପହଞ୍ଚି ଦେଖିଲା ଯେ ସେଠି ତାର କୁଡ଼ିଆ ପରିବର୍ତ୍ତେ ଗୋଟାଏ ନୂଆ କୋଠା ଛିଡ଼ାହୋଇଚି । କାବା ହୋଇ ଉରଣିମା ଭାବିବାକୁ ଲାଗିଲା—ତେବେ ସେ କ'ଣ ଭୁଲ୍ ଜାଗାରେ ଆସି ପହଞ୍ଚିଲା ?

ଟିକେ ପରେ ଦି'ଜଣ ବାଟୋଇଙ୍କୁ ଡାକି ପଚାରିଲା—"ଭାଇ, ଏଇ ଗାଁର ନାଁ କ'ଣ ?"

ସେମାନେ ଉତ୍ତର ଦେଲେ—"ଏ ଗାଁର ନାଁ ଓଲଗା ।"

"ଆଚ୍ଛା, ଏଠି ମାଛ-ଧରାଳି ଉରଣିମାର ଘର କେଉଁଠି କହିପାରିବ ?"

ତା କଥା ଶୁଣି ଲୋକ ଦିଜଣ ତାର ତାଳୁଠୁଁ ତଳପା ଯାଏଁ ଅନାଇଁ କହିଲେ—"ଆରେ,ତୁମେ ଗୋଟାଏ ପାଗଳ ନା କ'ଣ ? ଆମ ଜେଜେ-ବାପାଙ୍କଠୁଁ ଶୁଣିଚୁ ଯେ ତିନିଶହ ବର୍ଷ ତଳେ ଉରଣିମା ବୋଲି ଜଣେ ମାଛଧରାଳି ଦିନେ ରାତିରେ ନିଜ ଘରୁ ବାହାରିଗଲା ଯେ ଆଉ ଫେରିଲା ନାହିଁ । ସେ ବୁଡ଼ିମଲା କି ତାକୁ ଭୂତ ଖାଇଗଲା ସେ କଥା କେହି ଜାଣନ୍ତି ନାହିଁ । ଯା'ହେଉ, ସେ ତ ତିନିଶହ ବର୍ଷ ତଳର କଥା—ଆଉ ତୁମେ ଆଜି ଆସି ପଚାରୁଚ ଯେ ଉରଣିମାର ଘରଟା କେଉଁଠି ? ଯାଅ, ଯାଅ, ଶୀଘ୍ର ନିଜ ମୁଣ୍ଡର ଚିକିତ୍ସା କରାଇବ ଯାଅ ।" ଏହା କହି ହସି ହସି ଦିହେଁ ନିଜ ବାଟରେ ଚାଲିଗଲେ ।

ପଥର ମୂର୍ତ୍ତିପରି ଛିଡ଼ାହୋଇ ଉରଣିମା ମନେ ମନେ ଭାବିବାକୁ ଲାଗିଲା ଘଟଣା କ'ଣ ? ବହୁତ ବେଳ ଭାବିବା ପରେ ସେ ବୁଝିପାରିଲା ଯେ ପାତାଳ

ରାଜ୍ୟର ଏକ ମାସ ପୃଥିବୀର ଏକଶହ ବର୍ଷ ସଙ୍ଗେ ସମାନ । ତେଣୁ ସେଠି ସେ ତିନିମାସ ରହିଥିବା ମଧ୍ୟରେ ଏଠି ତିନିଶହ ବର୍ଷ ବିତିଯାଇଛି । ଫଳରେ ତାର ଆତ୍ମୀୟ ସ୍ୱଜନ, ଚିହ୍ନାଜଣା ଜଣେ ହେଲେ କେହି ବଞ୍ଚିନାହାନ୍ତି ।

ହତାଶ ହୋଇ ଉରଶିମା ଭାବିଲା—"ଆଉ ଏଠି ବୃଥା ସମୟ ନଷ୍ଟ କରି ଲାଭକଣ ? ତା ଅପେକ୍ଷା ରାଜକନ୍ୟା ନିକଟକୁ ଫେରିଗଲେ ଭଲ ହେବ ।" ଏହା ଭାବିକି ସେ ସମୁଦ୍ର କୂଳକୁ ଯାଇ ଡଙ୍ଗାଟି ପାଣିରେ ଭସାଇ ତହିଁରେ ଚଢ଼ି ବସିଲା । ଦିନ ଦିନ ହୋଇ ଚାରିଦିନ ବିତିଗଲା । ଚାରିପଟେ ନୀଳ ପାଣି । ମଝିରେ ମଝିରେ ଝଡ଼ ପବନରେ ଗୋଟାଏ ଗୋଟାଏ ପର୍ବତ ପରି ଢେଉ ମାଡ଼ିଆସି ତାର ଡଙ୍ଗାଟାକୁ ଟଳାଉଥାଏ । କୁଆଡ଼େ ଗଲା ପାତାଳ ରାଜ୍ୟକୁ ଯିବାର ବାଟ ? ଉରଶିମା ଡରିଗଲା; ଭାବିଲା ଯେ ସେ ନିଶ୍ଚୟ ଭୁଲ୍ ବାଟରେ ଚାଲିଛି । କିନ୍ତୁ ଏଇ ଅସୀମ ସମୁଦ୍ରରେ ଠିକଣା ବାଟ ତାକୁ ବତାଇଦେବ କିଏ ? ବ୍ୟାକୁଳ ହୋଇ ଭାବୁ ଭାବୁ ହଠାତ୍ ତାର ମନେପଡ଼ିଗଲା ରାଜକନ୍ୟା ତାକୁ ଦେଇଥିବା ଶାମୁକା-ତିଆରି ବାକ୍‌ସଟି କଥା । ହୁଏତ ତା ଭିତରୁ ପାତାଳପୁରୀକୁ ଯିବାର ଉପାୟ ମିଳିବ । ଅଧୈର୍ଯ୍ୟ ଓ ଉତ୍ତେଜନାରେ ସେ ରାଜକନ୍ୟାର ନିଷେଧ କଥା ଏକାବେଳକେ ଭୁଲିଗଲା । ନିଜ ପକେଟ୍ ଭିତରୁ ବାକ୍‌ସଟା କାଢ଼ିଆଣି ଫିଟାଇଦେବା ମାତ୍ରେ 'ଧୁ' କରି ଟିକେ ଧଳା ଧୂଆଁ ତା ଭିତରୁ ବାହାରି ଆକାଶକୁ ଚାଲିଗଲା ଆଉ ସେହିକ୍ଷଣି ଉରଶିମାର ମନେ ପଡ଼ିଗଲା ଯେ ସେ ଆଉ ତା ସ୍ତ୍ରୀ ପାଖକୁ ଫେରି ଯାଇପାରିବ ନାହିଁ । ଦୁଃଖ ଓ ଶୋକରେ ସେ ସେଇ ଡଙ୍ଗା ଭିତରେ ମୁଣ୍ଡ ପିଟି କାନ୍ଦିବାକୁ ଲାଗିଲା । ହାୟ ହାୟ ! ବର୍ତ୍ତମାନ ଯେ ନିଜ ସ୍ତ୍ରୀ ବିନା ସାରା ଦୁନିଆରେ ତାର ଆତ୍ମୀୟ ବନ୍ଧୁ ଆଉ କେହି ହେଲେ ନାହାନ୍ତି । ମାତ୍ର ସେତେବେଳକୁ ନେଡ଼ ଗୁଡ଼ କହୁଣୀକୁ ବୋହିଗଲାଣି, ପ୍ରତିକାରର ଉପାୟ ଆଉ ନାହିଁ ।

ସେଇ କୁହୁକ ବାକ୍‌ସ ଭିତରେ ଉରଶିମାର ପରମାୟୁ ବନ୍ଦୀ ହୋଇ ରହିଥିଲା । ସେଥିପାଇଁ ତିନିଶହ ବର୍ଷ ବିତିଯାଇଥିଲେ ସୁଦ୍ଧା ସେ କୋଡ଼ିଏ ବର୍ଷର ଜବାନ୍ ଟୋକାପରି ଦିଶୁଥିଲା । ମାତ୍ର ବାକ୍‌ସଟି ଖୋଲିଦେବାରୁ ଜରା, ରୋଗ ଓ ମୃତ୍ୟୁ ମହୁମାଛି ପଲପରି ଚାରିପଟୁ ତାକୁ ଆକ୍ରମଣ କଲେ । ଗୃହୁଁ ଗୃହୁଁ ତାର ବାଳ ବରଫ ପରି ଧଳା ଓ ଦେହର ଚମ ଲୋଗ୍ଟ କୋଗ୍ଟ ହୋଇଗଲା । ଆଖିକି ଦିଶିଲା ନାହିଁ କି କାନକୁ ଶୁଭିଲାନାହିଁ । ଛୁଡ଼ା ହେବାର

ଶକ୍ତି ମଧ୍ୟ ତାର ରହିଲା ନାହିଁ । ପାଣି ଭିତରେ ଥିବା ସବୁତକ ଦାନ୍ତ ହଠାତ୍ ଖସିପଡ଼ିଲା । ଏତିକିବେଳେ ଜରଣିମା ହଠାତ୍ ଥରକ ସକାଶେ ଦେଖିପାରିଲା— ଦୂରରେ ଦିଶୁଚି ପାତାଳପୁରର ସିଂହଦ୍ୱାର । ଏଣେ ଜରଣିମାର ଡଙ୍ଗା ଆସିବାର ଦେଖି ରଜାଝିଅ ବି ଦ୍ୱାରମୁହଁ ପାଖରେ ଆସି ଛିଡ଼ାହୋଇଗଲା । ମାତ୍ର ଜରଣିମା ଆଉ ସେଯାଏଁ ପହଞ୍ଚିପାରିଲା ନାହିଁ । ଗୋଟାଏ ମସ୍ତବଡ଼ ଢେଉର ଧକ୍କାରେ ତାର ବୃଦ୍ଧ ଶରୀରଟା ଡଙ୍ଗାରୁ ଛିଟିକି ଅତଳ ସମୁଦ୍ର ଭିତରେ ଚିରଦିନ ସକାଶେ ବୁଡ଼ିଗଲା । ରାଜକନ୍ୟା ସିଂହଦ୍ୱାରରେ ଛିଡ଼ାହୋଇ ବୃଥାରେ ଅପେକ୍ଷା କରିବାକୁ ଲାଗିଲା । ଜରଣିମା ଆଉ ଫେରିଲାନାହିଁ ।

## ଦୁଇ କାଠୁରିଆ

ଗୋଟିଏ ଗାଁରେ ଦୁଇଜଣ କାଠୁରିଆ ଥାଆନ୍ତି, ଜଣେ ସାନ ଆଉ ଜଣେ ବଡ଼ । ଦୁଇଜଣଯାକ ଗରିବ, ରୋଜ ବଣରୁ କାଠ କାଟିଆଣି ତାକୁ ବିକି ପେଟ ପୋଷନ୍ତି । ଦୁହିଁଙ୍କ ଗାଲରେ ଗୋଟାଏ ଲେଖାଁ ବଡ଼ ଆବୁ । ଏଇ ଆବୁ ଲାଗି ସେ ଦୁହିଁଙ୍କୁ ବଡ଼ ଲାଜଲାଗେ ଆଉ ରାତିରେ ଶୋଇବାପାଇଁ ବି ବଡ଼ ଅସୁବିଧା ହୁଏ । ତଥାପି ଦୁହିଁଙ୍କ ସ୍ୱଭାବରେ ଆକାଶ ପାତାଳ ପାର୍ଥକ୍ୟ । ସାନ କାଠୁରିଆଟି ଯେପରି ସରଳ ସେହିପରି ମୌଜିଆ । ମାତ୍ର ବଡ଼ କାଠୁରିଆଟି ଖୁବ୍ ଗର୍ବୀ ଆଉ ତା ମନ ଭିତରଟା ହିଂସାରେ ପୂରିରହିଥାଏ ।

ଦିନେ ସାନ କାଠୁରିଆ ବହୁତ ଦୂରରେ ଗୋଟାଏ ପାହାଡ଼ ପାଖରେ କାଠ କାଟିବାକୁ ଯାଇଚି—ଏପରି ସମୟରେ ହଠାତ୍ କଳା ମେଘ ଘୋଟିଯାଇ ପ୍ରବଳ ଝଡ଼ ଓ ବର୍ଷା ଆରମ୍ଭ ହେଲା । ସେଇ ବର୍ଷାମାଡ଼ରୁ ରକ୍ଷାପାଇବାଲାଗି କାଠୁରିଆଟି ନିକଟରେ ଥିବା ଗୋଟାଏ ବଡ଼ ଗଛର କୋରଡ଼ରେ ଆଶ୍ରୟ ନେଲା । କ୍ରମେ ସଞ୍ଜ ହେଲା, ତଥାପି ବର୍ଷା ଟିକେହେଲେ କମିଲାନାହିଁ । କେମିତି ରାତିଟା କଟାଇବ, ଏଇକଥା ଭାବିଭାବି ସେଇ କୋରଡ଼ ଭିତରେ ବସି ମନେ ମନେ ଭାବୁଚି, ଏପରି ସମୟରେ ଦୂରରୁ ଦଳେ ଲୋକ କଥାବାର୍ତ୍ତା ହୋଇ ଆସୁଥିବା ପରି ଜଣାଗଲା । ସେଇ କୋଳାହଳ ଶୁଣି କାଠୁରିଆ ମନରେ ଟିକେ ସାହସ ପଶିଲା । ସେ ଭାବିଲା ନିଶ୍ଚେ ଦଳେ ବାଟୋଇ ଏଇ ଆଡ଼କୁ ଆସୁଚନ୍ତି, ଆଉ

ସେମାନେ ପହଞ୍ଚଗଲେ ସେ ସେମାନଙ୍କ ସାଙ୍ଗରେ ନିଜ ଗାଁକୁ ଫେରିବ। ଏପରି ଭାବିକରି ସେମାନେ ପହଞ୍ଚଗଲେଣି କି ନାହିଁ ଦେଖିବାପାଇଁ ସେ କୋରଡ଼ ବାହାରକୁ ମୁଣ୍ଡ କାଢ଼ି ଅନାଇଲା। ଯାହା ଦେଖିଲା—ସେଥିରେ କାଠୁରିଆ ବିଚରାର ଝଲକ ଶୁଖିଗଲା। ସେ ଦେଖିଲା ଯେ ଦଳଟା ଆସି ପହଞ୍ଚଯାଇଛନ୍ତି, ସେମାନେ ସାଧାରଣ ମଣିଷପରି ଜଣୁ ନାହାନ୍ତି। କାହାର ଗୋଟାଏ ଗୋଡ଼, କାହାର ଗଣ୍ଡି ଅଛି ତ ମୁଣ୍ଡ ନାହିଁ, କାହାର ଗୋଟାଏ ଲାଞ୍ଜ ଅଛି, ପୁଣି କାହାର ବା ଗୋଟାଏ ଆଖି। ପୁଣି ସେମାନଙ୍କ ଦେହର ବର୍ଣ୍ଣ ନାନା ରଙ୍ଗର, ନାଲି, ଶାଗୁଆ, ବାଇଗଣୀ, ହଳଦିଆ। କାହାରି ଦେହରେ କୌଣସି ଲୁଗା ବା ପୋଷାକ ନାହିଁ। ଏଇ ଭୟଙ୍କର ଦୃଶ୍ୟ ଦେଖି କାଠୁରିଆଟି କୋରଡ଼ ଭିତରେ ଥାଇ ଭୟରେ ଥରିବାକୁ ଲାଗିଲା।

କ୍ରମେ ସେଇ ଜୀବଗୁଡ଼ାକ କାଠୁରିଆ ଲୁଚି ରହିଥିବା ଗଛ ନିକଟରେ ପହଞ୍ଚି ପ୍ରଥମେ ଗୁଡ଼ାଏ ଡାଳପତ୍ର ଆଣି ଗଦାକଲେ। ଯେପରି ତୁ ତୁ ହୋଇ ବର୍ଷା ପଡ଼ୁଛି—ମାତ୍ର ସେମାନଙ୍କ ମଧ୍ୟରୁ ଜଣେ ପଥରର ହାତତାଳି ମାରି ଫୁଙ୍କିଦେବା ମାତ୍ରେ ସେଇ ପ୍ରବଳ ବର୍ଷାରେ ଓଦା ଡାଳଗୁଡ଼ିକ ହୁ ହୁ ହୋଇ ଜଳିବାକୁ ଲାଗିଲା। ସେଠୁ କାଠୁରିଆ ବୁଝିପାରିଲା ଯେ ସେମାନେ ମଣିଷ ନୁହାନ୍ତି— ସେମାନେ ଭୋକଚଣ୍ଡ ଅସୁର। ଅସୁର ଗୁଡ଼ାକ ସେଇ ନିଆଁ କୁଣ୍ଡର ଚାରିପଟେ ଘେରି ବସି ଖୁସିଗୋଲରେ ମଦ ପିଇ ପିଇ ନିଜ ମଧ୍ୟରେ ନାନା ପ୍ରକାର କଥାବାର୍ତ୍ତା, ଥଟ୍ଟାତାମସା ହେବାକୁ ଲାଗିଲେ। କିଛି ସମୟ ପରେ ହାଣ୍ଡି ପରି କାନ ଥିବା ଗୋଟାଏ ଦୈତ୍ୟ ହଠାତ୍ ନିଜ ବସିବା ସ୍ଥାନରୁ ଉଠିପଡ଼ି ପାଗଳଙ୍କ ପରି ନାଚିବାକୁ ଲାଗିଲା। ତାର ଏଇ ନାଚ ଦେଖି ଆଉ କେତେକ ଦୈତ୍ୟ ବି ନିଜ ନିଜ ସ୍ଥାନରୁ ଉଠି ନାଚିବାକୁ ଲାଗିଲେ। ବଡ଼ ବିଚିତ୍ର ସେ ନାଚ; ତହିଁରେ ତାଳ ନାହିଁ କି ଲୟ ନାହିଁ; ଖାଲି ହାତପାଦ ଛାଟି, ଡେଇଁ, କୁଦି ହୁଲସ୍ଥୁଲ ଲଗାଇଥାଆନ୍ତି।

କୋରଡ଼ ଭିତରେ ରହି କାଠୁରିଆ ସବୁ ନଜର କରୁଥାଏ। ଏକେ ତ ସେ ମଜଳିଆ ଲୋକ, ତେଣୁ ଦୈତ୍ୟମାନଙ୍କର ଏଇ ମନଖୁସିର ନାଚ ଦେଖୁ ଦେଖୁ ତା ମନଟା ବି ଆନନ୍ଦରେ ନାଚିବାକୁ ଲାଗିଲା। ଶେଷକୁ, ନିଜକୁ ଆଉ ସମ୍ଭାଳି ନପାରି, 'ଯାହା ହବାର ହବ' କହି କୁରାଢ଼ିଟା ଫିଙ୍ଗିଦେଇ ମୁଣ୍ଡରେ ଟାଣକରି ପାଗଟା ଭିଡ଼ି, କୋରଡ଼ ଭିତରୁ ବାହାରିଆସି ଦୈତ୍ୟମାନଙ୍କ ସାଙ୍ଗରେ ମିଶି ତାଙ୍କରି ପରି ହାତଗୋଡ଼ ଛାଟି, କୁଦା ମାରି ନାଚିବାକୁ

ଲାଗିଲା । ମନଖୁସିରେ ସେ ନାନା ପ୍ରକାର ଅଙ୍ଗଭଙ୍ଗୀ କରି, କେତେବେଳେ ସିଧା, ପୁଣି କେତେବେଳେ ବା ବୁଲି ବୁଲି ନାଚିବାକୁ ଲାଗିଲା । ଦୈତ୍ୟମାନେ ତ କେବେହେଲେ ମଣିଷର ନାଚ ଦେଖିନଥିଲେ, ତେଣୁ କାଠୁରିଆର ନାଚ ଦେଖି ସେମାନେ ଖୁବ୍ ଖୁସି ହୋଇଗଲେ ।

ବହୁ ସମୟ ପରେ ଯେତେବେଳେ କାଠୁରିଆର ନାଚ ସରିଲା ଏବଂ ସେ ହାଲିଆ ହୋଇ ଭୂଇଁ ଉପରେ ବସିପଡ଼ିଲା, ଦୈତ୍ୟମାନେ ଏକ ସ୍ୱରରେ ତାର ବହୁତ ପ୍ରଶଂସା କରି କହିଲେ—"କାଠୁରିଆ ଭାଇ ! ତୁମେ ଖୁବ୍ ବଢ଼ିଆ ନାଚ ଜାଣିଚ । ମାତ୍ର କେବଳ ଗୋଟାଏ ରାତି ନାଚ ଦେଖାଇ ଖସିଗଲେ ଚଳିବ-ନାହିଁ । ରୋଜ ରାତିରେ ଆମକୁ ତୁମର ନାଚ ଦେଖାଇବାକୁ ପଡ଼ିବ ।"

କାଠୁରିଆ ହଁ ଭରିଲା; ମାତ୍ର ଜଣେ ଦୈତ୍ୟ କହିଲା—"ଭାଇମାନେ, ତା କଥାରେ ବିଶ୍ୱାସ ନାହିଁ । ଆମେ ଦୈତ୍ୟ ଆଉ ସେ ମଣିଷ । ମଣିଷମାନେ ଆମକୁ ଡରନ୍ତି । ତେଣୁ ତାକୁ ଥରେ ଛାଡ଼ିଦେଲେ ସେ ଆଉ ଭୁଲ୍‌ରେ ସୁଦ୍ଧା ଏ ବାଟ ମାଡ଼ିବ ନାହିଁ । ବରଂ ତାଠୁଁ ଗୋଟାଏ କିଛି ବନ୍ଧକ ରଖ, ଯାହା ପାଇଁ କି ସେ ଆମ ପାଖକୁ ଆସିବାକୁ ବାଧ୍ୟ ହବ ।"

ସମସ୍ତେ ପାଟି କରି ଉଠିଲେ "ଠିକ୍ କହୁଚ ! ହକ୍ କଥା କହୁଚ ! କ'ଣ ବନ୍ଧକ ରଖିବା ?"

ଜଣେ କହିଲା—"ତାର କୁରାଢ଼ିଟା ବନ୍ଧକ ରଖ ।"

ଆଉ ଜଣେ କହିଲା—"ନାହିଁ, ନାହିଁ—ତାର ପଗଡ଼ିଟା ରଖ ।"

ହାତି ପରି କାନ ଥିବା ଦୈତ୍ୟଟା କହିଲା—"ଆରେ ବୋକା ! କୁରାଢ଼ି କି ପଗଡ଼ି ସେ ତ ଯେତେବେଳେ ଇଚ୍ଛା ବଜାରରୁ କିଣି ଆଣି ପାରିବ । ସେପରି ଜିନିଷ ବନ୍ଧା ରଖି ଲାଭ କ'ଣ ? ମୁଁ କହୁଚି ତାର ଗୋଟାଏ ଗୋଡ଼ ଆମ ପାଖରେ ରଖିନଅ ।"

ତା କଥା ଶୁଣି ପଗଡ଼ି ରଖିବା କଥା କହୁଥିବା ଦୈତ୍ୟଟା ଖୁବ୍ ରାଗିଯାଇ କହିଲା—"ଆରେ ଓଲୁ ! ସେ ଆମ ପରି ଦୈତ୍ୟ ନୁହେଁ. ସେ ମଣିଷ । ତା'ର ଗୋଟାଏ ଗୋଡ଼ ରଖିଦେଲେ ସେ ଆମ ପାଖକୁ ଆସିବ କେମିତି ?"

ସମସ୍ତେ ଏ କଥାରେ ଏକମତ ହେଲେ, ମାତ୍ର ବଡ଼ ହେଲା ଯେ କ'ଣ ବନ୍ଧା ରଖାଯିବ ସେଇଟା ସ୍ଥିର ହୋଇ ପାରିଲା ନାହିଁ । ନାନା ଯୁକ୍ତି ତର୍କ,

ବାଦ ପ୍ରତିବାଦ ଚାଲିଚି; ଏପରି ସମୟରେ ଗୋଟିଏ ଆଖିଥିବା ଜଣେ ଦୈତ୍ୟ ହଠାତ୍ ପାଟି କରି କହିପକାଇଲା—"ମୁଁ ଠିକ୍ ଉପାୟ ପାଇଛି ।"

"କ'ଣ, କ'ଣ ?" ବୋଲି କହି ସମସ୍ତେ ତାକୁ ଆଗ୍ରହରେ ଅନାଇଲେ ।

ଦୈତ୍ୟଟା କହିଲା "ଭାଇମାନେ, ଏହି କାଠୁରିଆ ପାଖରେ ଗୋଟାଏ ଜିନିଷ ଅଛି ଯାହା ଖୁବ୍ କମ୍ ଲୋକଙ୍କଠାରେ ଦେଖାଯାଏ । ତାହା ହେଉଚି ତାର ବାଁପଟ ଗାଲ ଉପରେ ଥିବା ସେଇ ମାଂସ ପିଣ୍ଡୁଳାଟା । ମୁଁ କହୁଚି, ସେଇଟା ତା ଗାଲରୁ କାଢି ରଖ; ତା'ହେଲେ ତାର ଲୋଭରେ ସେ ନିଶ୍ଚେ ଆମ ପାଖକୁ ଫେରିଆସିବ ।"

କଥାଟା ସମସ୍ତଙ୍କ ମନକୁ ପାଇଲା । ଦୈତ୍ୟମାନେ କାଠୁରିଆକୁ ପଚାରିଲେ ଯେ ସେ ଏଇ ପ୍ରସ୍ତାବରେ ରାଜି ନା ନାହିଁ । ଆବୁ ହାତରୁ ରକ୍ଷା ପାଇଯିବ ଭାବି କାଠୁରିଆ ମନେ ମନେ ଖୁସି ହେଉଥିଲେ ସୁଦ୍ଧା ମୁହଁ ଶୁଖାଇ ଜବାବ ଦେଲା—"ତୁମେମାନେ ଯେତେବେଳେ ମାଗୁଚ, ମୁଁ ନାରାଜ ହେବି କେମିତି ?"

ଏ କଥା ଶୁଣିବା ମାତ୍ରେ ଗୋଟାଏ ଦୈତ୍ୟ ଆଗେଇ ଆସି ତାର ଗାଲଟାକୁ ତିନି ଥର ଫୁଙ୍କି ଆବୁଟାକୁ ଟାଣି ଆଣିବା ମାତ୍ରେ ସେଟା ଖଣ୍ଡେ ମଲା ଚମ ପରି ଖସିଆସିଲା—କାଠୁରିଆକୁ ଟିକେ ହେଲେ ବାଧିଲା ନାହିଁ । ଏଣେ ଦୈତ୍ୟମାନଙ୍କ ଭିତରେ ବି ଆବୁଟାକୁ ଭଲଭାବରେ ଦେଖିବା ଲାଗି ଜୋର୍‌ଯୋର୍ ଧସ୍ତାଧସ୍ତି, ଠେଲାପେଲା ଆରମ୍ଭ ହୋଇଗଲା । ଏତିକବେଳେ ହଠାତ୍ କାଉର 'କା' ଶୁଣାଗଲା ଆଉ ପୂର୍ବପଟ ଆକାଶ ଉଜ୍ଜ୍ୱଳ ହୋଇ-ଆସିଲା । ଚୁହୁଁ ଚୁହୁଁ ଦୈତ୍ୟମାନେ ଆଖିପିଛୁଳାକେ ଅନ୍ତର୍ଦ୍ଧାନ ହୋଇଗଲେ ।

ଦିନ ଘଡ଼ିଏ ବେଳକୁ ଗୋଟାଏ ବୋଝ କାଠ ମୁଣ୍ଡାଇ କାଠୁରିଆ ନିଜ ଗାଁରେ ଆସି ପହଞ୍ଚିଲା । ଗାଁଲୋକେ ତ କାଠୁରିଆ ଗାଲରେ ଆବୁ ନାହିଁ ଦେଖି ଏକାବେଳକେ କାବାହୋଇଗଲେ । ଜନ୍ମରୁ ରହିଥିବା ତା ଗାଲର ଏଡ଼େ ବଡ଼ ଆବୁଟା ହଠାତ୍ ରାତିକ ଭିତରେ କୁଆଡ଼େ ଲୁଚିଗଲା ଜାଣିବା ଲାଗି ସମସ୍ତେ ତାକୁ ବେଢ଼ିଗଲେ । ସେ ମଧ୍ୟ ସେମାନଙ୍କ ଆଗରେ ଗତ ରାତିର ଝଡ଼ ବର୍ଷା କଥା, ଦୈତ୍ୟମାନଙ୍କ ନାଚ ତାମସା କଥା ଓ ଶେଷରେ ଆବୁ ବନ୍ଧକ ରଖିବା କଥା—ସବୁ ଗୋଟି ଗୋଟି କରି କହିଗଲା ।

ଏ କଥା ଶୁଣି ବଡ଼ କାଠୁରିଆର ମନ ଈର୍ଷାରେ ଜଳିଗଲା, ସେ ବି ସେହି ଦୈତ୍ୟମାନଙ୍କ ପାଖକୁ ଯାଇ ନିଜର ଆବୁଟା ଖସାଇ ଦେବ ବୋଲି ମନେ ମନେ ବିଚାରିଲା । ତେଣୁ କାହାକୁ କିଛି ନ କହି, ସେଦିନ ସଞ୍ଜ ନବୁଡ଼ୁଣୁ ସେ ମୁଣ୍ଡରେ ଗୋଟାଏ ପାଗ ଭିଡ଼ି ଆଉ କୁରାଢ଼ିଟା ଧରି ସେଇ ଗଛ କୋରଡ଼ ଭିତରେ ଯାଇ ବସିଲା । ସେଦିନ ବି ରାତି ଦିପହର ବେଳକୁ ଦୈତ୍ୟମାନେ ଆସି ପହଞ୍ଚି, ନିଆଁ ଜାଳି ସେମାନଙ୍କ ନାଚ ଗୀତ ଆରମ୍ଭକଲେ । ସେମାନଙ୍କ ବିକଟାଳ ରୂପ ଦେଖି ବଡ଼ କାଠୁରିଆ ଆଉ ନାଚିବ କ'ଣ, ଭୟରେ ତାର ହାତ ଗୋଡ଼ ଅଚଳହୋଇଗଲା । ଏତିକିବେଳେ ଦୈତ୍ୟମାନେ ତାକୁ ଦେଖି— "ଆରେ କାଠୁରିଆଭାଇ, ସେଠି ଲୁଚିଛ କାହିଁକି ? ଆମ ସାଙ୍ଗରେ ନାଚିବ ଆସ ।" କହି ତାକୁ ପଦାକୁ ଟାଣିଆଣିଲେ । ତାର ପ୍ରାଣଟା ଭୟରେ ଥରୁ-ଥାଏ; ତେଣୁ ଦୈତ୍ୟମାନେ ଥରକୁ ଥର ଯେତେ ଅନୁରୋଧ କଲେ ସୁଦ୍ଧା ସେ ଠିକେହେଲେ ନାଚିପାରିଲାନାହିଁ । ଏହି ପରି ଟଣା ଓଟରା ହେଉ ହେଉ ରାତି ପାହିଗଲା, କୁଆ 'କା' କଲା । ଶେଷକୁ ଦୈତ୍ୟମାନେ ରାଗିଯାଇ "ଏବେତ ଆମର ଦରକାର ନାହିଁ; ତୋ ଜିନିଷ ତୁ ନେଇଯା" କହି ସାନ କାଠୁରିଆର ଆବୁଟି ଆଣି ତାର ଆର ଗାଲରେ ଖଞ୍ଜିଦେଲେ । ସକାଳ ହୋଇଯିବାରୁ ବଡ କାଠୁରିଆ ଦି' ଗାଲରେ ଦିଟା ଆବୁ ଘେନି ଗାଁକୁ ଫେରିଲା । ଗାଁଯାକ ଲୋକେ ତାର ଏଇ ଅବସ୍ଥା ଦେଖି ଥଟ୍ଟାଟାପରା କରିବାକୁ ଲାଗିଲେ ।

## ମହାବୀର ରକ୍ଷୋ

ବହୁବର୍ଷ ତଳର କଥା । ରାକ୍ଷସମାନଙ୍କ ଉପଦ୍ରବରେ ଜାପାନ ସାରା ହୁଲୁସ୍ଥୁଲ ପଡ଼ିଯାଇଥାଏ । ଘରେ ଘରେ କାନ୍ଦ । କାହାର ପୁଅ, କାହାର ବା ବାପ, ପୁଣି କାହାରି ବା ଗାଈଗୋରୁ ରାକ୍ଷସମାନେ ଲୁଟିନେଇ ଖାଇଦେଇଛନ୍ତି । ନିତି ଶହ ଶହ ପ୍ରଜା କାନ୍ଦି କାନ୍ଦି ରଜାଙ୍କ ପାଖରେ ଗୁହାରି ଜଣାନ୍ତି । ପ୍ରଜା-ମାନଙ୍କ ଦୁଃଖ ଦେଖି ରଜା ନାନା ପ୍ରକାର ଚେଷ୍ଟାକଲେ, ମାତ୍ର ଗୋଟାଏ ହେଲେ ରାକ୍ଷସ ମାରିପାରିଲେ ନାହିଁ । ଶେଷକୁ ହତାଶ ହୋଇ ମନ୍ତ୍ରୀଙ୍କୁ ଡାକି ରଜା କହିଲେ—"ମନ୍ତ୍ରୀ, ସବୁତକ ପ୍ରଜା ଯଦି ରାକ୍ଷସ ପେଟକୁ ଯିବେ, ତେବେ ମୁଁ କାହାକୁ ଘେନି ରାଜତ୍ୱ କରିବ ?"

ମନ୍ତ୍ରୀ ଉତ୍ତର ଦେଲେ—"ମହାରାଜ ! ମୁଁ ନିରୁପାୟ । ରାକ୍ଷସମାନଙ୍କୁ ମାରିବା ଲାଗି ଯାହା କିଛି ସମ୍ଭବ ମୁଁ କରିଛି । ସବୁ ଘାଟିଜାଗାମାନଙ୍କରେ ଅସ୍ତ୍ରଧାରୀ ସୈନ୍ୟ ଜଗିଛନ୍ତି । ପ୍ରତି ଗାଁର ଲୋକଙ୍କୁ ହୁସିଆର ରହିବା ଲାଗି ଜଣାଇଦେଇଛି । ତଥାପି ସେମାନେ କେତେବେଳେ ଆସି ମଣିଷ ଧରି ନେଇଯାଉଛନ୍ତି, ସେକଥା କେହିଜାଣିପାରୁନାହାନ୍ତି । ମୁଁ ଭାବୁଛି ସେମାନଙ୍କୁ ଜବତ କରିବା ମଣିଷ ପକ୍ଷରେ ସମ୍ଭବ ନୁହେଁ ।"

ରାଜା କହିଲେ—"ସେ କଥା କହିଲେ ତ ଚଳିବ ନାହିଁ ମନ୍ତ୍ରୀ; ତୁମେ ସେନାପତିଙ୍କୁ ଡକାଇଆଣ ।"

ଡାକରା ପାଇ ସେନାପତି ରକୋ ତରବର ଆସି ରାଜାଙ୍କ ସାମନାରେ ହାଜରହେଲେ । ରକୋ ଯେପରି ବଳବାନ୍ ସେହିପରି ବୀର ଏବଂ ଦୁର୍ବଳଙ୍କୁ ରକ୍ଷା କରିବା ପାଇଁ ସେ ସର୍ବଦା ପ୍ରସ୍ତୁତ । ରାଜାଙ୍କ ଆଦେଶ ଶୁଣିବାମାତ୍ରେ ସେ ଏକ ହଜାର ବଛା ବଛା ବୀର ଯୋଦ୍ଧା, ଯଥେଷ୍ଟ ଅସ୍ତ୍ରଶସ୍ତ୍ର ଓ ପ୍ରଚୁର ଖାଦ୍ୟ ଘେନି ରାକ୍ଷସମାନଙ୍କୁ ଧ୍ୱଂସ କରିବା ଲାଗି ବାହାରିଲେ । ସୈନ୍ୟସାମନ୍ତ ଧରି ରକୋ ତ ବାହାରିଲେ, ମାତ୍ର ସେ ଯିବେ କେଉଁଆଡ଼େ ? ରାକ୍ଷସମାନଙ୍କର ଦେଶ କେଉଁଠି ସେ କଥା କେହି ଜାଣନ୍ତି ନାହିଁ । ଶୂନ୍ୟରୁ ଖସିଲାପରି ରାକ୍ଷସଗୁଡ଼ାକ ହଠାତ୍ ଆସି ଲୋକବାକ, ଗାଈଗୋରୁ ଧରିନେଇ ପୁଣି କେଉଁଆଡ଼େ ଅନ୍ତର୍ଦ୍ଧାନ ହୋଇଯାଆନ୍ତି । ତାଛଡ଼ା, କାହାର ବା ସାହସ ଅଛି ଯେ ସେମାନଙ୍କ ପିଛା କରି ତାଙ୍କ ଦେଶର ଠିକଣା ଘେନି ଆସିବ ।

ଯାହେଉ, ଲୋକଙ୍କ କଥା ଉପରେ ନିର୍ଭରକରି ସୈନ୍ୟମାନଙ୍କୁ ଧରି ରକୋ ପଶ୍ଚିମମୁହାଁ ଆଗେଇବାକୁ ଲାଗିଲେ । ଦିନ ଦିନ ହୋଇ ଦୁଇମାସ ବିତିଗଲା । କେତେ ନଈ ନାଳ, ବଣ, ମରୁଭୂମି ସେମାନେ ଟପି ଆସିଲେ, ତଥାପି ରାକ୍ଷସମାନଙ୍କର ଚିହ୍ନ ସୁଦ୍ଧା ମିଳିଲାନାହିଁ । ସୈନ୍ୟମାନେ ବି ହତାଶ ହୋଇ ପଡ଼ିଲେ, ମାତ୍ର ରକୋ ସେମାନଙ୍କୁ ନାନାପ୍ରକାର ଉତ୍ସାହ ଦେଇ ନିଜର ଉଦ୍ଦେଶ୍ୟ ସାଧିବା ଲାଗି ଆଗେଇ ଚାଲିଥାଆନ୍ତି । ଏତିକିବେଳେ ସେମାନଙ୍କ ଆଗରେ ପଡ଼ିଲା ଗୋଟାଏ ବିରାଟ ପାହାଡ଼ । ପାହାଡ଼ଟା ଏଡ଼େ ଉଚ୍ଚ ଯେ ତା'ର ଶିଖରଟା ଆକାଶ ଭିତରେ ପଶି ଯାଇଥିବା ପରି ଦିଶୁଥାଏ । ଯେକୌଣସି ପ୍ରକାରେ ସେଇ ପାହାଡ଼ଟା ଟପିବାକୁ ପଡ଼ିବ । ପାହାଡ଼ ଉପରେ ଚଢିବା ଲାଗି କେବଳ ଗୋଟାଏ ସରୁ ବାଟ । ପୁଣି ସେ ବାଟଟା ଏଡ଼େ ସରୁ ଯେ

ଦୁଇଜଣ ଲୋକ ପାଖାପାଖି ସେ ବାଟରେ ଚାଲିପାରିବେ ନାହିଁ । ତା ଛଡ଼ା ପାଚିରି ପରି ସିଧା ପାହାଡ଼ଟା ଉପରେ ଚଢିବା ଏତେ କଷ୍ଟ ଯେ ସେଇ ହାଡଭଙ୍ଗା ଶୀତରେ ସୁଦ୍ଧା ରକୋ ଓ ତାଙ୍କ ସୈନ୍ୟମାନେ ଝାଳରେ ଓଦା ସରସର ହୋଇଗଲେ ।

ଯାହାହେଉ, ବହୁ ପରିଶ୍ରମ ପରେ ପାହାଡ଼ର ଚୂଡ଼ାରେ ପହଞ୍ଚି ରକୋ ଚାରିପଟକୁ ଅନାଇଁ ଦେଖିଲେ ଯେ କେଉଁଠି ହେଲେ ରାକ୍ଷସମାନଙ୍କ ଚିହ୍ନ ଦିଶୁନାହିଁ । ଏବେ କ'ଣ କରିବେ ବୋଲି ସେ ମନେ ମନେ ବିଚାରୁଛନ୍ତି, ଏପରି ସମୟରେ ଗୋଟାଏ ଠକ୍ ଠକ୍ ଶବ୍ଦ ଶୁଣି ଅନାଇଁ ଦେଖିଲେ ଯେ ଜଣେ ଖୁବ୍ ବୁଢ଼ା ଋଷି ଗୋଟିଏ ଗୁମ୍ଫା ଭିତରୁ ବାହାରି, ବାଡ଼ି ଠକ୍ ଠକ୍ କରି ତାଙ୍କ ଆଡ଼କୁ ଆସୁଛନ୍ତି । ତାଙ୍କୁ ଦେଖି ରକୋ ବିଚାରିଲେ ଯେ ଏଇ ଋଷି ନିଶ୍ଚୟ ସେମାନଙ୍କୁ ରାକ୍ଷସପୁରୀର ସନ୍ଧାନ ଦେଇପାରିବେ । ତେଣୁ ରକୋ ଋଷିଙ୍କ ନିକଟକୁ ଯାଇ ତାଙ୍କୁ ଖୁବ୍ ଭକ୍ତିରେ ପ୍ରଣାମ କଲେ । ଶାନ୍ତ ସ୍ୱରରେ ଋଷି ପଚାରିଲେ—"ବାପା ! ତୁମେମାନେ କିଏ ? ଏଇ ଅମଡ଼ା ସ୍ଥାନକୁ ଆସିଚ କାହିଁକି ?"

ରକୋ କହିଲେ—"ମୁଁ ଜାପାନର ସେନାପତି ରକୋ । ଆମ ରାଜା ମତେ ହୁକୁମ ଦେଇଛନ୍ତି ରାକ୍ଷସମାନଙ୍କୁ ଧ୍ୱଂସ କରିବା ପାଇଁ । ମାତ୍ର ଦୁଇମାସ କାଳ ବହୁ ଚେଷ୍ଟାକରି ସୁଦ୍ଧା ମୁଁ ରାକ୍ଷସମାନଙ୍କର ସନ୍ଧାନ ପାଇଲି ନାହିଁ । ମୋର ବିଶ୍ୱାସ, ଆପଣ ନିଶ୍ଚୟ ଆମକୁ ରାକ୍ଷସପୁରୀକୁ ବାଟ ବତାଇ ଦେଇ ପାରିବେ ।"

ଚମକପଡ଼ି ଋଷି କିଛି ସମୟ ରକୋଙ୍କୁ ଏକ ଲୟରେ ଚାହିଁ ରହିଲେ । ତା ପରେ ଧୀରେ ଧୀରେ କହିଲେ—"ହଁ, ରାକ୍ଷସ ମାରିବାର ଶକ୍ତି ଓ ସାହସ ତୁମଠି ରହିଚି । ମୁଁ ଜାଣିପାରୁଚି ଯେ ରାକ୍ଷସମାନଙ୍କର ଉତ୍ପାତ ସୀମା ଟପିଗଲାଣି । ଏଣିକି ସେମାନଙ୍କୁ ଧ୍ୱଂସ କରିବା ଛଡ଼ା ଆଉ ଉପାୟ ନାହିଁ । କେବଳ ରାକ୍ଷସପୁରୀର ବାଟ ଜାଣିଲେ ଚଳିବ ନାହିଁ, ତା' ସଙ୍ଗେ ସଙ୍ଗେ ସେମାନଙ୍କ ସଙ୍ଗେ ଲଢ଼ିବାର କୌଶଳ ମଧ୍ୟ ଜାଣି ରଖିବା ନିହାତି ଦରକାର । ମୁଁ ତୁମମାନଙ୍କୁ ସେ ସବୁ ବତାଇଦେବି । ମାତ୍ର ବର୍ତ୍ତମାନ ତୁମେମାନେ ଖୁବ୍ ହାଲିଆ ହୋଇପଡ଼ିଚ । ଆଜି ଦିନଟା ମୋ ପାଖରେ ରହି ବିଶ୍ରାମ କର; କାଲି ସକାଳୁ ମୁଁ ତୁମମାନଙ୍କର ସବୁ ସୁବିଧା କରିଦେବି ।"

ଋଷିଙ୍କ କଥା ଶୁଣି ସକୋ ଓ ତାଙ୍କ ସୈନ୍ୟମାନେ ଆନନ୍ଦରେ ନାଚି-ଉଠିଲେ । ତା' ଛଡ଼ା ଏଡ଼େ ଉଚ ପାହାଡ଼ ଉପରେ ଚଢ଼ି ସେମାନେ ପ୍ରକୃତରେ ଖୁବ୍ ହାଲିଆ ହୋଇଯାଇଥିଲେ । ଋଷିଙ୍କ ଗୁହାରେ ପହଞ୍ଚି ନାନା ଜାତିର ମିଠାଫଳ ଖାଇ ଓ ଦୁଧ ପିଇ ସେମାନେ ଟିକେ ଆରାମ ବୋଧକଲେ । ସଞ୍ଜ ପରେ ପୁଣି ଫଳମୂଳ ଖାଇ, ରାତିଟା ସେଇ ଗୁହା ଭିତରେ ଶାନ୍ତିରେ ଶୋଇପଡ଼ିଲେ ।

ପରଦିନ ସକାଳୁ ଋଷି ସେମାନଙ୍କୁ ଫଳ ଓ ଦୁଧ ଖୁଆଇ କହିଲେ—"ତୁମମାନଙ୍କର ଖଣ୍ଡା ବା ବର୍ଚ୍ଛାରେ ରାକ୍ଷସମାନେ ମରିବେ ନାହିଁ, ଓଲଟି ସେମାନଙ୍କ ଦେହରେ ବାଜି ତୁମ ଅସ୍ତ୍ରଗୁଡ଼ାକ ଖଣ୍ଡ ଖଣ୍ଡ ହୋଇଯିବ । ଏସବୁ ଅସ୍ତ୍ର ଏଇ ଗୁହାରେ ରଖିଦିଅ । ରାକ୍ଷସମାନଙ୍କୁ ମାରିବାପାଇଁ କୁହୁକ ଅସ୍ତ୍ର ମୁଁ ତୁମମାନଙ୍କୁ ଦେଉଚି—ତା' ସାହାଯ୍ୟରେ ତୁମେମାନେ ସେମାନଙ୍କୁ ମାରିପାରିବ । ତା'ଛଡ଼ା ତୁମମାନଙ୍କୁ ଦେଖିବାମାତ୍ରେ ରାକ୍ଷସମାନେ ତୁମକୁ ମାରିଖାଇଯିବେ । ତେଣୁ ମୁଁ ତୁମ ପ୍ରତ୍ୟେକଙ୍କୁ ଗୋଟିଏ ଲେଖାଁ କୁହୁକ ପଗଡ଼ି ଦେବି । ଏଇ ପଗଡ଼ି ପିନ୍ଧିଲେ ତୁମେମାନେ ଅଦୃଶ୍ୟ ହୋଇଯିବ । ନିଜେ ଅଦୃଶ୍ୟ ଥାଇ କୁହୁକ ଅସ୍ତ୍ରରେ ରାକ୍ଷସମାନଙ୍କ ସଙ୍ଗରେ ଲଢ଼ିଲେ ସେମାନେ ସହଜରେ କାବୁ ହୋଇଯିବେ । ଆଉ ଗୋଟାଏ କଥା ରାକ୍ଷସମାନେ ବହୁତ ମଦ ପିଅନ୍ତି; ଆଉ ଏଇ ମଦ ହିଁ ସେମାନଙ୍କର କାଳ ହେବ । ପାଖ ଗୁହାରେ ଶହେ ପିମ୍ପା ନିଦ ଔଷଧ ମିଶା ମଦ ରହିଚି । ଆଉ ଗୋଟାଏ ପଟେ ପାଞ୍ଚ ପିମ୍ପା ସାଦା ମଦ ରହିଚି । ସେଇ ମଦତକ ତୁମେମାନେ ସାଙ୍ଗରେ ନେଇଯିବ । ରାକ୍ଷସମାନଙ୍କ ସଙ୍ଗରେ ବସି ଏକାଠି ମଦ ପିଇବା ସମୟରେ ନିଜେ ସାଦା ମଦ ପିଇ ସେମାନଙ୍କୁ ଔଷଧ ମିଶା ମଦତକ ପିଆଇଦେଲେ ସେମାନେ ଅଳ୍ପ ସମୟ ଭିତରେ ନିଘୋଡ଼ ନିଦରେ ଶୋଇପଡ଼ିବେ । ସେଇ ସୁଯୋଗରେ ତୁମେମାନେ ନିଜ କାମ ହାସଲକରି ପୁଣି ଏଠାକୁ ଫେରିଆସିବ ।

ଋଷିଙ୍କ କଥା ଶୁଣି ସକୋ ଓ ତାଙ୍କ ସୈନ୍ୟମାନେ ସଙ୍ଗେ ସଙ୍ଗେ ନିଜ-ନିଜର ହତିଆର ସେଇ ଗୁହା ଭିତରେ ରଖିଦେଇ କୁହୁକ ଅସ୍ତ୍ର ଅଣ୍ଟାରେ ଖୋସିଲେ ଏବଂ କୁହୁକ ପଗଡ଼ି ମୁଣ୍ଡରେ ପିନ୍ଧି ଅଦୃଶ୍ୟ ହୋଇଗଲେ । ତାପରେ ପାଖ ଗୁହାରେ ଥୁଆହୋଇଥିବା ମଦ ପିମ୍ପାତକ ମୁ ଣ୍ଡାଇ ଋଷିଙ୍କ ପଛେ ପଛେ ରାକ୍ଷସପୁରୀ ଆଡ଼େ ଯାତ୍ରା ଆରମ୍ଭକଲେ । ପାହାଡ଼ର ପଛପଟେ ଗୋଟାଏ

ବିବାଟ ସୁଡ଼ଙ୍ଗ । ସେଇ ସୁଡଙ୍ଗ ଟପିଗଲେ ରାକ୍ଷସମାନଙ୍କର ଦେଶ ପଡ଼ିବ । ଋଷି ସେଇ ସୁଡ଼ଙ୍ଗ ମୁହଁଯାଏ ଆସି ସେମାନଙ୍କୁ ଆଶୀର୍ବାଦ କରି ବିଦାୟ ନେଲେ ଏବଂ ଫେରିବା ବାଟରେ ତାଙ୍କ ସଙ୍ଗରେ ଦେଖାକରି ଯିବାପାଇଁ କହିଗଲେ ।

ବଙ୍କୋ ଓ ତାଙ୍କର ସୈନ୍ୟମାନେ ଅଦୃଶ୍ୟ ଥାଇ ସେଇ ଅନ୍ଧାରୁଆ ସୁଡ଼ଙ୍ଗ ବାଟରେ ଆଗେଇବାକୁ ଲଗିଲେ । ବହୁ ସମୟ ଚାଲି ଚାଲି ଶେଷରେ ସେମାନେ ସୁଡ଼ଙ୍ଗର ଆର ମୁହଁ ପାଖରେ ପହଞ୍ଚିଗଲେ । ସେଟା ହେଉଛି ରାକ୍ଷସପୁରୀ ଭିତରେ ପଶିବାର ବାଟ । ହାଣ ପରି ବଡ, ବାଘ ପରି ହିଂସ୍ର ଦଳେ ରାକ୍ଷସ ସେଇ ବାଟକୁ ଜଗିରହିଥାଆନ୍ତି । ବଙ୍କୋ ଓ ତାଙ୍କର ସୈନ୍ୟମାନେ ପଶିବା ମାତ୍ରେ, ମଣିଷ ବାସନା ନାକରେ ପଶିବାରୁ ରାକ୍ଷସମାନଙ୍କ ପାଟିରୁ ନାଳ ବୋହିବାକୁ ଲଗିଲା । ବଡ଼ ବଡ଼ ନାଲି ଆଖିଟାମାନ ତରାଟି ସେମାନେ ଚାରିପଟକୁ ଅନାଇଁଲେ, ମାତ୍ର କୁହୁକ ପଗଡ଼ି ପିନ୍ଧିଥିବା ହେତୁ ଜଣକୁ ହେଲେ ଦେଖିପାରିଲେ ନାହିଁ, ଦିଶିଲା କେବଳ ସେଇ ବଡ଼ ବଡ଼ ମଦ ପିମ୍ପା-ଗୁଡ଼ାକ । ସେଇ ଅଧା ଆଲୁଅ ଅଧା ଅନ୍ଧାରରେ ବଡ଼ ପିମ୍ପାଗୁଡ଼ାକୁ ଦେଖି ପ୍ରହରୀମାନେ ଭାବିଲେ ଯେ ଏମାନେ ବି ବୋଧହୁଏ ଏକ ଜାତିର ରାକ୍ଷସ; ପେଟେ ଲେଖାଁ ମଣିଷ ଖାଇ ଆସିଛନ୍ତି, ତେଣୁ ସେମାନଙ୍କ ଦେହରୁ ମଣିଷ ବାସନା ବାହାରୁଛି । ତେଣୁ ସେମାନେ ଆଡ଼େଇ ହୋଇଯାଇ ବଙ୍କୋ ଓ ତାଙ୍କ ସେନାମାନଙ୍କୁ ଭିତରେ ପଶିବା ଲାଗି ବାଟ ଛାଡ଼ିଦେଲେ ।

ରାକ୍ଷସପୁରୀ ଭିତରେ ପଶିବା ପରେ ଚାରିପଟ ଉଜ୍ଜ୍ୱଳ ଦିଶିଲା । ମାତ୍ର ଏ ଆଲୁଅ ସୂର୍ଯ୍ୟର କିରଣ ନୁହେଁ । ସେମାନେ ଦେଖିଲେ ଯେ ଗୋଟାଏ ଢିପ ଉପରେ ଖଣ୍ଡେ ବଡ଼ ହୀରା ରଖାଯାଇଛି ଏବଂ ସେଇ ହୀରାର ଆଲୁଅରେ ଚାରିପଟ ଉଜ୍ଜ୍ୱଳ ଦିଶୁଛି । ଖଣ୍ଡେ ବାଟ ଆଗେଇଯାଇ ସେମାନେ ଦେଖିଲେ ଗୋଟାଏ ରକ୍ତର ପୋଖରୀ ଏବଂ ଗୋଟିଏ ସୁନ୍ଦରୀ ଝିଅ ସେଇ ରକ୍ତରେ ଚମଡ଼ା ତିଆରି ପୋଷାକ କାଚି ସଫା କରୁଛି ଆଉ ମଝିରେ ମଝିରେ ମନଦୁଃଖରେ ବିକଳ ହୋଇ କାନ୍ଦୁଛି । ଝିଅଟିର କାନ୍ଦଣା ଦେଖି ବାକୋଙ୍କ ହୃଦୟ ଦୟାରେ ତରଳିଗଲା । ସେ ନିଜ ମୁଣ୍ଡରୁ ଅଦୃଶ୍ୟ ପଗଡ଼ିଟି କାଢ଼ି ସେଇ ଝିଅ ପାଖକୁ ଯାଇ ପଚାରିଲେ—"ତୁମେ କିଏ ? ଏଇ ରାକ୍ଷସପୁରୀକୁ ଆସିଲ କିପରି ?"

ବଙ୍କୋଙ୍କୁ ଦେଖି ଝିଅଟି କଇଁ କଇଁ ହୋଇ କାନ୍ଦି ଉଠି କହିଲା—"ଆପଣ ନିଶ୍ଚେ ଜଣେ ଦେବପୁରୁଷ; କାହିଁକନା ଏଇ ରାକ୍ଷସପୁରୀ ଭିତରକୁ

ସାଧାରଣ ମଣିଷ ଦଶିବା ଅସମ୍ଭବ । ମୁଁ ଜଣେ ଜମିଦାରଙ୍କ ଝିଅ । ରାକ୍ଷସମାନେ ମୋର ବାପମା ଓ ସକଳ ଆତ୍ମୀୟଙ୍କୁ ଖାଇ ମତେ ତାଙ୍କର ପୋଇଲୀ କରି ରଖିଚନ୍ତି । ସେମାନଙ୍କର ପୋଷାକ ସଫା କରିବା ମୋର ନିତିଦିନିଆ କାମ ।”

ରକୋ କହିଲେ—“ଆଉ ବ୍ୟସ୍ତ ହୁଅ ନାହିଁ । ମୁଁ ଜାପାନର ସେନାପତି ରକୋ । ରାକ୍ଷସମାନଙ୍କୁ ମାରି ମୁଁ ତୁମକୁ ଉଦ୍ଧାର କରି ମୋ ସାଙ୍ଗରେ ନେଇଯିବି ।” ଏହା କହି ରକୋ ପୁଣି କୁହୁକ ପଗଡ଼ିଟି ପିନ୍ଧି ନିଜ ସୈନ୍ୟମାନଙ୍କୁ ଧରି ଆଗେଇବାକୁ ଲାଗିଲେ । କିଛି ବାଟ ଯିବାପରେ ସେମାନେ ରାକ୍ଷସମାନଙ୍କ ରାଜପ୍ରାସାଦରେ ଆସି ପହଞ୍ଚିଗଲେ । ହାତୀ ଦାନ୍ତ, ଗଣ୍ଡାର ଚମ, ବାଘ ଭାଲୁଙ୍କ ଖୁଲି ଆଉ ମଣିଷ ହାଡ଼ରେ ତିଆରି ସେଇ ରାଜପ୍ରାସାଦ । ପଚିଶ ଜଣ ଭୟଙ୍କର ରାକ୍ଷସ ହତିଆର ଧରି ସେଇ ପ୍ରାସାଦକୁ ଜଗିଥାଆନ୍ତି । ରକୋ ଓ ତାଙ୍କର ସୈନ୍ୟମାନେ ଅଦୃଶ୍ୟ ଥାଇ କୁହୁକ ଅସ୍ତ୍ର ସାହାଯ୍ୟରେ ଖୁବ୍ ଅଳ୍ପ ସମୟ ଭିତରେ ସେଇ ପ୍ରହରୀମାନଙ୍କୁ ମାରି ଶୁଆଇଦେଲେ । ଏ ଘଟଣା ଦେଖି—“ଶତ୍ରୁ ଆକ୍ରମଣ କରୁଚି” ବୋଲି ହୁରି ପଡ଼ିଗଲା ଏବଂ ଗୁହୁଁ ଗୁହୁଁ ଦଳକୁ ଦଳ ରାକ୍ଷସ ନାନା ପ୍ରକାର ହତିଆର ଧରି ଶତ୍ରୁ ସଙ୍ଗରେ ଲଢିବା ପାଇଁ ଘର ଦାଣ୍ଡରେ ଆସି ପହଞ୍ଚିଗଲେ ।

ଘମାଘୋଟ ଯୁଦ୍ଧ ଆରମ୍ଭ ହୋଇଗଲା । ରକୋ ଓ ତାଙ୍କ ସୈନ୍ୟମାନେ କୁହୁକ ପଗଡ଼ି ପିନ୍ଧି ଅଦୃଶ୍ୟ ହୋଇ ଯାଇଥିବା ଯୋଗୁଁ ରାକ୍ଷସମାନେ ସେମାନଙ୍କୁ ଦେଖିପାରୁନଥିଲେ, ଫଳରେ ସେମାନେ ଅନ୍ଦାଜରେ ଏଣେ ତେଣେ ଅସ୍ତ୍ର ଚଳାଇବାକୁ ଲାଗିଲେ । ତେଣୁ ରକୋଙ୍କ ସୈନ୍ୟମାନଙ୍କ ମଧ୍ୟରୁ କେହି ହେଲେ ମରିବା ତ ଦୂରର କଥା, ଆଘାତ ମଧ୍ୟ ପାଇଲେ ନାହିଁ । ମାତ୍ର ରକୋଙ୍କ ସୈନ୍ୟମାନେ ଋଷି ଦେଇଥିବା ଅମୋଘ ଅସ୍ତ୍ର ଦ୍ୱାରା ଅସୁରଗୁଡ଼ାକୁ ଶହ ଶହ ସଂଖ୍ୟାରେ ମାରିବାକୁ ଲାଗିଲେ । କିଛି ସମୟ ଏପରି ହଣାକଟା ଚାଲିବା ପରେ ରାକ୍ଷସମାନଙ୍କ ସାହସ ହଜିଗଲା, ଅସ୍ତ୍ର ଫୋପାଡ଼ି ଦେଇ ସେମାନେ ସନ୍ଧି କରିବା ଲାଗି ପ୍ରାର୍ଥନା କଲେ । ସେଠୁ ରକୋ ଓ ତାଙ୍କ ସୈନ୍ୟମାନେ କୁହୁକ ପଗଡ଼ି କାଢି ରାକ୍ଷସ ରାଜାଙ୍କ ସଙ୍ଗରେ ପ୍ରାସାଦ ଭିତରେ ପଶିଲେ ।

ରାକ୍ଷସମାନେ ଡରିଯାଇ ସନ୍ଧି ପ୍ରସ୍ତାବ କରିଥିଲେ ସୁଦ୍ଧା, ସେମାନଙ୍କ ଚାଲି ଚଳନରୁ ରକୋ ବୁଝିପାରିଲେ ଯେ ସେମାନେ କୌଣସି ନୂଆ ଉପାୟରେ ତାଙ୍କୁ କାବୁ କରିବାର ଉପାୟ ଉଣ୍ଡୁଚନ୍ତି । ତେଣୁ ସେ ଖୁବ୍

ସତର୍କ ହୋଇ ରହିଲେ । ରାକ୍ଷସ ରଜାଙ୍କ ସଙ୍ଗରେ ସେମାନେ ଯାଇ ତାଙ୍କ ଦରବାର ଘରେ ପହଞ୍ଚିଲେ । ସେ ଘରର ଆସବାବ ପତ୍ର ଦେଖି ସେମାନଙ୍କର ଆଖି ଖୋସିହୋଇଗଲା । ଗୋରୁ ଚମର ଗାଲିଚ୍ଛ ଉପରେ ମଣିଷ ଶବର ଛକଆ । ମଲା ମଣିଷର ବାଳରେ ତିଆରି ଚାମର୍‌ରେ ସେମାନଙ୍କୁ ବିଞ୍ଚା ହେଉଥାଏ । ମୁହଁ ହାତ ଧୋଇବା ପାଇଁ ହାଣ୍ଡି ଖପୁରିରେ ଖପୁରିଏ ରକ୍ତ ଆଣି ଆଗରେ ଥୋଇଦେଲେ । ଘର ଭିତରେ ଜଳୁଥିବା ଦୀପରେ ଘିଅ ବା ତେଲ ବଦଳରେ ଦିଆଯାଇଥାଏ ମଣିଷର ଚର୍ବି । ଟିକଏ ପରେ ଅତିଥି ଚର୍ଚ୍ଚା ଲାଗି ନାନା ପ୍ରକାର ଖାଇବା ଜିନିଷ ସେମାନଙ୍କ ଆଗରେ ଥୁଆଗଲା । ରାକ୍ଷସମାନେ ଆଣିଥିବା ଖାଦ୍ୟଗୁଡ଼ିକୁ ଦେଖି ରାକୋ ଓ ତାଙ୍କ ସେନାମାନେ ଘୃଣାରେ ଥରିଗଲେ । ମଇଁଷି ଚମର ଥାଳରେ ନାନା ଜୀବଜନ୍ତୁ ଓ ମଣିଷର କଞ୍ଚା ମାଂସ ଖଣ୍ଡ ଖଣ୍ଡ କଟାହୋଇ ପରଶା ଯାଇଥାଏ । ସଢ଼ା ପଚ୍ଚ ମାଂସ ଚଟଣୀ ବୋଲି ପରଶା ଯାଇଥାଏ । ଆଉ ତା' ସାଙ୍ଗରେ ପିଇବା ସକାଶେ ଦିଅ ଯାଇଥାଏ ରକ୍ତରୁ ତିଆରି ଏକପ୍ରକାର ମଦ ।

ସୈନ୍ୟମାନେ ଏ ଖାଦ୍ୟ ନେଇ କ'ଣ କରିବେ ବୋଲି ବିଚାରୁଛନ୍ତି, ଏତିକବେଳେ ରାକୋ ହଠାତ୍ ଛିଡ଼ାହୋଇପଡ଼ି କହିଲେ—"ରାକ୍ଷସରାଜ ! ଆମ ଧର୍ମରେ ମାଂସ ଖାଇବା ମନା । ତେଣୁ ଆମେ ସାଙ୍ଗରେ ଆଣିଥିବା ପାନୀୟ ପିଇ ଆଜି ରାତିଟା କଟାଇଦେବୁ । ଆପଣମାନେ ଆମ ସାଙ୍ଗରେ ମିଶି ତାହା ପିଇଲେ ଆମେ ବହୁତ ଖୁସିହେବୁ ।" ମଦ ନାଁ ଶୁଣିବାମାତ୍ରେ ରାକ୍ଷସମାନଙ୍କ ପାଟିରୁ ନାଳ ବୋହିବାକୁ ଲାଗିଲା । ରାକ୍ଷସ ରାଜା ବି ଲୋଭ ସମ୍ଭାଳି ନପାରି କହିଲେ "ଭଲକଥା, ଆଣନ୍ତୁ ଆପଣମାନଙ୍କ ମଦ ।"

ରାକୋଙ୍କ ଇଙ୍ଗିତ ପାଇବା ମାତ୍ରେ କେତେଜଣ ସୈନ୍ୟ ଯାଇ ମଦ ପିପାତକ ବୋହିଆଣି ଭଲ ମଦତକ ନିଜ ଆଗରେ ଓ ଔଷଧମିଶା ମଦତକ ରାକ୍ଷସମାନଙ୍କ ଆଗରେ ଥୋଇଦେଲେ । ରାକ୍ଷସମାନେ ମନଇଚ୍ଛା ସେଇ ମଦ ପେଟେ ପେଟେ ପିଇ ଅଳ୍ପ ସମୟ ମଧ୍ୟରେ ନିଘୋଡ଼ ନିଦରେ ଶୋଇପଡ଼ିଲେ । ଟିକେ ପରେ ସେମାନଙ୍କର ପ୍ରଚଣ୍ଡ ଘୁଙ୍ଗୁଡ଼ିରେ ନଅରଟା ଥରଥର ହୋଇ କମ୍ପିବାକୁ ଲାଗିଲା । ମାତ୍ର ରାକୋ ଓ ତାଙ୍କ ସୈନ୍ୟମାନେ ସାଦା ମଦ ଖୁବ୍ ଅଳ୍ପ ଅଳ୍ପ ପିଇଥିବା ଯୋଗୁଁ ପୂରା ଜାଗ୍ରତ ଅବସ୍ଥାରେ ରହିଥିଲେ । ଏତିକବେଳେ ସୁବର୍ଣ୍ଣ ସୁଯୋଗ ଦେଖି ରାକୋ ଆଦେଶ ଦେବା ମାତ୍ରେ ତାଙ୍କ ସୈନ୍ୟମାନେ ନିଜନିଜର କୁହୁକ ଅସ୍ତ୍ର ନେଇ ରାକ୍ଷସମାନଙ୍କ ମୁଣ୍ଡଗୁଡ଼ାକ

ଗଣ୍ଡିରୁ ଅଲଗା କରିଦେଲେ । ଉତ୍ପାତ କରିବା ପାଇଁ ଆଉ ଗୋଟାଏ ହେଲେ ରାକ୍ଷସ ବଞ୍ଚିଲା ନାହିଁ ।

ରାତି ପାହିବା ମାତ୍ରେ ରାକୋ ଆଗେ ରକ୍ତ-ପୋଖରୀ କୂଳକୁ ଯାଇ ସେଇ ଝିଅଟିକୁ ଡାକିଆଣି ରାକ୍ଷସମାନଙ୍କ ମୁଣ୍ଡଗୁଡ଼ାକ ଦେଖାଇଦେଲେ । ତାପରେ ରାକ୍ଷସପୁରୀରେ ଆଉ କ'ଣ କାମ ଅଛି ପଚାରିବାରୁ ଝିଅଟି ତାଙ୍କୁ ରାକ୍ଷସମାନଙ୍କ ଗନ୍ତାଘରକୁ ନେଇଗଲା । ତା ଭିତରେ ଗଦା ଗଦା ସୁନା, ରୁପା, ହୀରା, ମୁକ୍ତା । ଏଗୁଡ଼ାକ ରାକ୍ଷସମାନେ ରାଜା ଜମିଦାରଙ୍କ ଘରୁ ଲୁଟି ଆଣି ସାଇତି ରଖିଥିଲେ । ରାକୋଙ୍କ ସୈନ୍ୟମାନେ ଏଗୁଡ଼ିକୁ ଖାଲିହୋଇ-ଯାଇଥିବା ମଦପିମ୍ପାଗୁଡ଼ାକରେ ଭର୍ତ୍ତିକରି ସାଙ୍ଗରେ ନେଇଗଲେ । ଗନ୍ତାଘର ପାଖରେ ଥିବା କଏଦଖାନାରେ ଷାଠିଏ ଜଣ ଲୋକଙ୍କୁ ରାକ୍ଷସମାନେ ଧରି ଆଣି ଶିକୁଳିରେ ବାନ୍ଧି ରଖିଥିଲେ, ଯେଉଁ ଦିନ କିଛି ଶିକାର ନମିଳିବ ସେଦିନ ଏମାନଙ୍କୁ ମାରି ଖାଇବେବୋଲି । ରାକୋ ସେମାନଙ୍କ ଶିକୁଳି ଫିଟାଇ ତାଙ୍କ ସଙ୍ଗରେ ଫେରିଯିବା ପାଇଁ କହିଲେ । ଯେଉଁ ବଡ଼ ହୀରାର ଆଲୁଅରେ ରାକ୍ଷସ-ପୁରୀ ଉଜ୍ଜ୍ୱଳ ଦିଶୁଥିଲା, ରାକୋ ସେଇ ହୀରାକୁ ନିଜ ପାଖରେ ରଖିଲେ । ତାପରେ ମନଖୁସିରେ ସବୁତକ ଧନରତ୍ନ ଧରି ଗୀତ ଗାଇ ଗାଇ ସୈନ୍ୟମାନେ ନିଜ ଦେଶକୁ ଫେରିଲେ ।

ସେଇ ପାହାଡ଼ ପାଖରେ ପହଞ୍ଚି ରାକୋ ପ୍ରଥମେ ଋଷିଙ୍କୁ ପ୍ରଣାମ କରି ତାଙ୍କୁ ସେଇ ବଡ଼ ହୀରା ଖଣ୍ଡିକ ଉପହାରଦେଲେ । ମାତ୍ର ଋଷି ସେଇଟି ନ ନେଇ ରାକୋଙ୍କୁ କହିଲେ ନିଜ ପାଖରେ ରଖିବା ପାଇଁ । ତା'ପରେ ଏମାନେ ଋଷିଙ୍କୁ ସେ ଦେଇଥିବା କୁହୁକ ପଗଡ଼ି ଓ ଅସ୍ତ୍ରତକ ଫେରାଇଦେଇ ନିଜନିଜର ପଗଡ଼ି ପିନ୍ଧି ଓ ଅସ୍ତ୍ର ଧରି ଦେଶକୁ ଫେରିଲେ ।

ରାକ୍ଷସପୁରୀରେ ଥିବା ଝିଅଟି ପ୍ରତି ରାକୋଙ୍କ ମନରେ ଖୁବ୍ ସ୍ନେହ ଆସିଥିଲା । ତେଣୁ ଜାପାନରେ ପହଞ୍ଚି ସମ୍ରାଟଙ୍କୁ ସବୁ ଖବର ଜଣାଇ ଓ ଧନରତ୍ନତକ ଜମାଦେଇ ରାକୋ ସେଇ ଝିଅଟିକୁ ବିବାହ କରିବା ଲାଗି ତାଙ୍କର ଅନୁମତି ମାଗିଲେ । ରାକୋଙ୍କ ବୀରପଣରେ ରାଜା ଏତେ ଖୁସି ହୋଇଯାଇଥିଲେ ଯେ ବିବାହ କରିବାର ଅନୁମତି ତ ସେ ସଙ୍ଗେ ସଙ୍ଗେ ଦେଲେ ଏବଂ ବିଭାଘର ଦିନ ନିଜେ ଉପସ୍ଥିତ ଥାଇ ରାକୋଙ୍କୁ ସେଇ ବଡ଼ ହୀରାଟି ଉପହାରଦେଲେ । ଏହା ପରେ ଜାପାନରେ ଆଉ କଦାପି ରାକ୍ଷସଙ୍କ ଉତ୍ପାତକଥା ଶୁଣାଯାଇନାହିଁ ।

# ଶାମୁକା ଦେଶର କଥା

ଜଣେ ରଜାଙ୍କର ଦୁଇ ପୁଅ—ବଡପୁଅ ନାଁ ଝିଲକ କୁମାର୍ ଅ.ଉ ସାନ ପୁଅର ନାଁ ଝିଲକ କୁମାର । ବଡପୁଅ ପ୍ରଚଣ୍ଡ ରାଗୀ, ସତେ ଯେପରି ନିଆଁ ହୁଳା, ଥରେ ରାଗିଗଲେ ରକ୍ଷା ନାହିଁ । ସାନ ଝିଲକ କୁମାରର ରାଗ ଆକାଶର ବିଜୁଳି ପରି, କ୍ଷଣକେ ରାଗେ ପରମୁହୂର୍ତ୍ତରେ ଭୁଲିଯାଏ । ଝିଲକ କୁମାର ମାଛ ମାରିବାରେ ବଡ ପଟୁ । ନଈ, ନାଳ, ପୋଖରୀ, ସମୁଦ୍ର ଯେଉଁଠାରେ ହେଲେ ବନ୍‌ଶୀ ପକାଇଲେ ସେ ବୃହତ୍ ବୃହତ୍ ଗଦାକୁ ଗଦା ବଡ ବଡ ମାଛ ଧରିଆଣେ । ଆଉ ଝିଲକ କୁମାର ପକ୍‌କା ଶିକାରୀ । ତାର ଶରମାଡରେ କେତେ ଯେ ବାଘ, ଭାଲୁ, ବାର୍‌ହା, ହରିଣ ମାରିଚି ତାର ହିସାବ ନାହିଁ ।

ରଜା ରାଣୀ ସାନ ପୁଅକୁ ଟିକେ ବେଶୀ ସ୍ନେହ କରନ୍ତି ବୋଲି ଝିଲକ କୁମାର ମନେ ମନେ ଝିଲକ କୁମାର ଉପରେ ଖୁବ୍ ବିରକ୍ତ ହୋଇଥାଏ । ଟିକେ କିଛି ଆଳ ପାଇଲେ ସାନଭାଇକୁ ମନ ଇଚ୍ଛା ଗାଳି ମାଡ ଦିଏ । ମାତ୍ର ଏତେ ଗାଳି ମାଡ ଖାଇ ସୁଦ୍ଧା ଝିଲକ କୁମାର ବଡ ଭାଇ ଉପରେ ରାଗେ ନାହିଁ, ଓଲଟା ତାଙ୍କର କାମଦାମ କରିଦିଏ ।

ବଡଭାଇ ରୋଜ ବଡ ବଡ ମାଛ ଧରି ଆଣୁଚି ଦେଖି ଦିନେ ଝିଲକ କୁମାରର ଭାରି ମନହେଲା ମାଛ ମାରିବା ପାଇଁ । ଝିଲକ କୁମାରକୁ ଯାଇ ସେ କହିଲା—"ଭାଇ, ନିତି ଶିକାର କରି କରି ମତେ ବଡ ବିରକ୍ତ ଲାଗିଲାଣି । ଆଜ ମାଛ ଧରିବା ଲାଗି ମୋର ଭାରି ମନହେଉଚି । ତୁମ ବନ୍‌ଶୀଟା ମତେ ଟିକଏ ଦିଅ ।"

ତା କଥା ଶୁଣି ଝିଲକ କୁମାର ଖିଙ୍କାରି ଉଠି କହିଲା—"ଯା ଯାଃ, ତୁ ପୁଣି ଗୋଟାଏ ମାଛ ଧରିବୁ କ'ଣ ? ଓଲଟି ମୋର ବନ୍‌ଶୀଟାକୁ ଖରାପ କରିଦେବୁ ।" ମାତ୍ର ଝିଲକ କୁମାର ନଛୁଡେ । ଭାଇଙ୍କ ଗୋଡତଳେ ପଡ଼ି ସେ ଦିନକ ପାଇଁ ବନ୍‌ଶୀ ଖଡ଼ାଟା ଦେବାକୁ ବହୁତ ବିନୟକଲା । ଶେଷକୁ ଝିଲକ କୁମାର ମନରେ ଟିକଏ ଦୟା ଆସିଲା । ସାନ ଭାଇକୁ ବନ୍‌ଶୀ ଖଡ଼ାଟା ଦେଇ କହିଲେ—"ଜାଣି ସାବଧାନ, ଖରାପ ଯେପରି ନହୁଏ ।"

ବନ୍‌ଶୀଖଡ଼ାଟା ଧରି ଝିଲକ କୁମାର ସମୁଦ୍ର କୂଳରେ ଥିବା ଗୋଟିଏ ଖାଡ଼ରେ ମାଛ ମାରିବା ଲାଗି ବସିଗଲା । ବନ୍‌ଶୀ କଣ୍ଟାରେ ଖୁବ୍ ଭଲ ଗୁଡ଼ିଏ ଲଗାଇ ସେ ମାଛ ଆସିବାକୁ ଅପେକ୍ଷା କରି ରହିଲା । ଗୁହ୍ମଁ ଗୁହ୍ମଁ ଦିନ ଦିପହର ହେଲା, ପ୍ରଚଣ୍ଡ ଖରାରେ ତାର ଦେହ ମୁଣ୍ଡ ସିଝିଗଲା, ତଥାପି ଗୋଟାଏ ହେଲେ ମାଛର ଦେଖା ନାହିଁ । ଖରା ଯେତେ ବଢ଼ିବାକୁ ଲାଗିଲା ଝିଲକ କୁମାରର ଜିଦ୍ ବି ସେତିକ ଟାଣ ହେବାକୁ ଲାଗିଲା । ତାର ପ୍ରତିଜ୍ଞା—ଅନ୍ତତଃ ଗୋଟାଏ ମାଛ ନ ଧରି ସେ ଘରକୁ ଫେରିବନାହିଁ । ଅଖିଆ ଅପିଆ ସେମିତି ସେ ସମୁଦ୍ର କୂଳରେ ବସିରହିଲା । ରଜା ରାଣୀ ଥରକୁ ଥର ଲୋକ ପଠାଇଲେ ଖାଇବା ଲାଗି ତାକୁ ଡାକି ଆଣିବା ପାଇଁ, ମାତ୍ର ଝିଲକ କୁମାର କାହାରି କଥା କାନରେ ପୂରାଇଲେ ନାହିଁ । ସମସ୍ତଙ୍କୁ ତାର ଏକା ଜବାବ—"ମାଛଧରିଲେ ଏଠୁ ଉଠିବି ।"

ଗୁହ୍ମଁ ଗୁହ୍ମଁ ଦିନ ବତି ମୁହିଁ ସଞ୍ଜ ହେବା ଉପରେ । ଝିଲକ କୁମାର ସେଯାଏଁ ସମୁଦ୍ର କୂଳରେ ପଥର ମୂର୍ତ୍ତିଟାଏ ପରି ବସିରହିଛି । ଏତିକବେଳେ ମନେହେଲା ଗୋଟାଏ ମାଛ ଆସି ବନ୍‌ଶୀ କଣ୍ଟାଟାକୁ ମୁହଁରେ ଠେଲୁଛି । ଝିଲକ ବନ୍‌ଶୀଖଡ଼ାଟାକୁ ଜୋର୍‌ରେ ଚିପିଧରିଲା । ଟିକେ ପରେ ସେଇ ମାଛଟା ଯେମିତି ବନ୍‌ଶୀ କଣ୍ଟାଟା ଗିଳିଦେଇଛି, ଝିଲକ ସାଙ୍ଗେ ସାଙ୍ଗେ ଖଡ଼ାଟାକୁ ଜୋର୍‌ରେ ଭିଡ଼ି ଆଣିଲା । କିନ୍ତୁ ହାୟ ! ଥୋପ ଗିଳିଥିବା ବିରାଟ ମାଛଟା ଏକ ଝାପଟ୍ ମାରି କଣ୍ଟା ସମେତ ସୂତାଟା ଛିଣ୍ଡାଇ ସମୁଦ୍ର ଭିତରକୁ ପଳାଇଗଲା । ହଠାତ ହୃଦୟରେ ଝିଲକ ବାଧ ହୋଇ ସୂତା ଛିଣ୍ଡା ବନ୍‌ଶୀଖଡ଼ାଟା ଧରି ଘରକୁ ଫେରିଆସିଲା । ସାରା ଦିନ ପରେ ସଞ୍ଜବେଳେ ଖାଲି ହାତରେ ଘରକୁ ବାହୁଡ଼ିବା ଦେଖି ଝିଲକ କୁମାର ସାନ ଭାଇକୁ ପରିହାସ କରି କହିଲା—"ଆରେ ବୋକା ବାଣୁଆ, ମାଛ ମାରିବା ତୋ' କାମ ନୁହେଁ । ଦେ ଦେ, ମୋର ବନ୍‌ଶୀ ଖଡ଼ାଟା ଫେରାଇଦେ ।"

ସୂତା ଛିଣ୍ଡା ବନ୍‌ଶୀ ଖଡ଼ାଟା ଦେଖି ଝିଲକ ରାଗରେ ଗୋଟା ପଣ ପାଚିଗଲା । ସାନଭାଇକୁ ନିସ୍ଠୁର ମାଡ଼ଦେଇ ଓ ମନଇଚ୍ଛା ଗାଳିକରି କହିଲା—"ଶୀଘ୍ର ଯାଇ ମୋର ବନ୍‌ଶୀ କଣ୍ଟା ଆଣିଦେ—ନ ହେଲେ ଆଜି ତୋର ଦିନେ କି ମୋର ଦିନେ ।"

ଦିନ ସାରା ଭୋକ ଉପାସରେ ରହି, ଖରା ମାଡ଼ ଖାଇ ସୁଦ୍ଧା ମାଛ ଧରି ପାରି ନଥିବା ଯୋଗୁଁ ଝିଲକ ମନ ବଡ଼ ଖରାପ ଥିଲା । ତା ଉପରେ ବଡ଼

ଭାଇର ଗାଳି ଶୁଣି ତା ମନ ବଡ଼ ଖରାପ ହୋଇଗଲା । ସେ ସଙ୍ଗେ ସଙ୍ଗେ ନିଜର ଦାମିକା ଖଣ୍ଡାଟାକୁ ଖଣ୍ଡ ଖଣ୍ଡ କରି, ସେଇ ଇସ୍ପାତରୁ ପାଞ୍ଚଶହ ବନ୍‌ଶୀ କଣ୍ଟା ତିଆରି କରି ଝିଲିକ ଆଗରେ ଥୋଇଦେଇ କହିଲା—"ଭାଇ, ତୁମର ଗୋଟିଏ ବନ୍‌ଶୀ କଣ୍ଟା ବଦଳରେ ଏଇ ନିଅ ପାଞ୍ଚଶହଟା କଣ୍ଟା ।"

ଝିଲିକ ତ ମହାରାଗୀ । ସେ ସେଇ କଣ୍ଟାତକ ଗୋଡ଼ରେ ଆଡ଼େଇ ଦେଇ କହିଲା—"ଏସବୁ ରଦ୍ଦି କଣ୍ଟା ମୋର ଦରକାର ନାହିଁ । ତୁ ମତେ ମୋର ଅସଲ କଣ୍ଟାଟା ଆଣିଦେ ।"

ବଡ଼ଭାଇର ରାଗ ଦେଖି ଝିଲିକର ହାଲୁକ ଶୁଖିଗଲା । ସେ ତୁରନ୍ତ ଯାଇ ଜଣେ ଭଲ କାରିଗରକୁ ଡକାଇ ହଜାରେ ବନ୍‌ଶୀ କଣ୍ଟା ତିଆରି କରାଇଲା । ତାପରେ ସେଇ କଣ୍ଟାତକ ଝିଲିକର ପାଦତଳେ ଥୋଇଦେଇ ହାତ ଯୋଡ଼ି କହିଲା—"ଭାଇ, ଏଇ ହଜାରେ କଣ୍ଟା ନେଇ ମୋର ଦୋଷ କ୍ଷମା କର ।" ମାତ୍ର ଝିଲିକର ରାଗ ସେହିପରି ରହିଥାଏ । ସେ ସାନ ଭାଇକୁ ଦୁଇ ଚଟକଣି ମାରି କହିଲା "ମୋର ହଜାରେ କି ଦ' ହଜାରେ କଣ୍ଟା ଦରକାର ନାହିଁ । ମୋ ବନ୍‌ଶୀ ଖଡ଼ାରେ ଲାଗିଥିବା ଯେଉଁ କଣ୍ଟାଟା ତୁ ହଜାଇଦେଇଚୁ ସେଇ କଣ୍ଟାଟା ହିଁ ମୋର ଦରକାର । ସେଟା ଆଣିନଦେଲେ ତୋର ରକ୍ଷା ନାହିଁ ।"

ଏକଥା ଶୁଣି ଝିଲିକର ବୁଦ୍ଧି ହଜିଗଲା । ଯେଉଁ ବଡ଼ ମାଛଟା ଝିଲିକର ବନ୍‌ଶୀ କଣ୍ଟାଟା ଛିଣ୍ଡାଇ ସମୁଦ୍ର ଭିତରକୁ ପଳାଇଯାଇଚି, ତାକୁ ଖୋଜି ବାହାର କରିବା କୌଣସି ମଣିଷ ପକ୍ଷରେ ସମ୍ଭବ ନୁହେଁ । କେଉଁ ଉପାୟରେ ବଡ଼ଭାଇର ହଜିଲା କଣ୍ଟାଟି ମିଳିପାରିବ—ସେ କିଛି ଭାବିପାରିଲା ନାହିଁ । ଏଣେ କଣ୍ଟା ଫେରସ୍ତ ନଦେଉଥିବା ଯୋଗୁଁ, ଉଠୁଣୁ ବସୁଣୁ ଝିଲିକ ତାକୁ ମାଡ଼ମାରୁଥାଏ ଓ ଗାଳିକରୁଥାଏ । ମନକୁମନ ସେ କହିବାକୁ ଲାଗିଲା— "ହାୟ ! ହାୟ ! କାହିଁକି ମୁଁ ଭାଇଙ୍କର ବନ୍‌ଶୀଖଡ଼ାଟା ନେଲି । ସେଇଥିପାଇଁ ମତେ ଆଜି ଏତେ ଗାଳି ପରିଭବ ସହିବାକୁ ପଡ଼ୁଚି ।"

ଶେଷକୁ ଦିନେ ବଡ଼ଭାଇର ମାଡ଼ ଗାଳି ଆଉ ସହି ନପାରି ଝିଲିକ ଘରେ କାହାକୁ କିଛି ନକହି ବହୁ ଦୂରକୁ ଚାଲିଯାଇ ସମୁଦ୍ର କୂଳରେ ଏକା ଏକା ବସି ନିଜ ଦୁର୍ଭାଗ୍ୟ କଥା ଭାବି କାନ୍ଦିବାକୁ ଲାଗିଲା । କିଛି ସମୟ ପରେ ସେ ଦେଖିଲା ଯେ ଜଣେ ଖୁବ୍ ବୁଢ଼ା ସନ୍ନ୍ୟାସୀ ତା ଆଗରେ ଛିଡ଼ାହୋଇଚନ୍ତି ।

ସନ୍ନ୍ୟାସୀ ତା ମୁଣ୍ଡ ଉପରେ ହାତ ରଖି କୋମଳ ସ୍ୱରରେ ପଚାରିଲେ—
"ରଜାପୁଅ, ତୁମର କ'ଣ ହୋଇଚି; କାନ୍ଦୁଚ କାହିଁକି ?"

ଝିଲିକ ତାଙ୍କୁ ସବୁ ଘଟଣା ଜଣାଇ ତାଙ୍କ ଗୋଡ଼ତଳେ ପଡ଼ି କହିଲା—
"ଆପଣ ନିଶ୍ଚେ ଜଣେ ସିଦ୍ଧପୁରୁଷ । ମୁଁ କେମିତି ଭାଇଙ୍କର ବନ୍‌ଶୀ କଣ୍ଠା ଫେରସ୍ତ ପାଇବି ସେ ବାଟ ବତାଇଦିଅନ୍ତୁ ।"

ସନ୍ନ୍ୟାସୀ କହିଲେ "ବ୍ୟସ୍ତ ହୁଅନାହିଁ, ମୋ ସାଙ୍ଗରେ ଆସ; ମୁଁ ସବୁ ବନ୍ଦୋବସ୍ତ କରିଦେବି ।" ଏହା କହି ସେ ତାଙ୍କୁ ଖଣ୍ଡେ ଦୂରରେ ଥିବା ଗୋଟିଏ ସାନ ଡଙ୍ଗା ପାଖକୁ ନେଇଯାଇ କହିଲେ—"ରଜାପୁଅ ! ଭୟ କରନାହିଁ । ଏଇ ଡଙ୍ଗାରେ ବସି ସିଧା ଦକ୍ଷିଣ ଆଡ଼କୁ ଚାଲିଯାଅ । କିଛି ଦୂର ଗଲା ପରେ ଦେଖିବ ସମୁଦ୍ର ମଝିରେ ଶାମୁକାରେ ତିଆରି ଗୋଟାଏ ବିରାଟ ନଅର । ସେଇ ନଅରରେ ସମୁଦ୍ରର ମାଲିକ ଶଙ୍ଖରାଜ ରହନ୍ତି । ତାଙ୍କ ନଅର କଡ଼ରେ ଗୋଟାଏ କୂଅ ଅଛି । ସେଇ କୂଅ ପାଖରେ ଗୋଟାଏ ମୁକ୍ତାର ଗଛ । ତୁମେ ଡଙ୍ଗାରୁ ଓହ୍ଲାଇ ଯାଇ ସେଇ ଗଛ ଉପରେ ଚଢ଼ି ବସିରହିଲେ ତୁମର ଇଚ୍ଛା ପୂର୍ଣ୍ଣ ହେବ ।" ଏହା କହି ତାଙ୍କୁ ଆଶୀର୍ବାଦ କରି ସନ୍ନ୍ୟାସୀ ଚାଲିଗଲେ ଏବଂ ଝିଲିକ ବି ଦକ୍ଷିଣ ଦିଗକୁ ଡଙ୍ଗା ଭସାଇଦେଲା ।

ଚାହୁଁ ଚାହୁଁ ଦିନଟା ବିତିଯାଇ ରାତି ଘୋଟିଆସିଲା । ଝିଲିକ ପ୍ରାଣପଣେ ଆହୁଲା ମାରି ଦକ୍ଷିଣ ଦିଗକୁ ଚାଲିଚି । ପରଦିନ ସକାଳୁ ସୂର୍ଯ୍ୟ କିରଣରେ ସେ ଦେଖିପାରିଲା ଦୂରରେ ସମୁଦ୍ର ମଝିରେ ଶାମୁକାରେ ଗଢ଼ା ଗୋଟାଏ ପ୍ରକାଣ୍ଡ ନଅର । ନଅର ଭିତରେ ପଶି ଦେଖିଲା ଫାଟକ ପାଖରେ ଗୋଟାଏ କୂଅ ଏବଂ ସେଇ କୂଅ କଡ଼ରେ ଗୋଟାଏ ମୁକ୍ତାର ଗଛ । କିଛି ଚିନ୍ତା ନକରି ଝିଲିକ ସେଇ ଗଛ ଉପରେ ଚଢ଼ି ବସିରହିଲା । କିଛି ସମୟ ପରେ ନଅର ଭିତରୁ ଜଣେ ଦାସୀ ପାଣି ନେବାପାଇଁ ସେଇ କୂଅ ପାଖକୁ ଆସିଲା । ସେ ରେଶମ ଦଉଡ଼ିରେ ସୁନାର ଲୋଟାଟାଏ ବାନ୍ଧି କୂଅ ଭିତରେ ଗଳାଇବା ମାତ୍ରେ କୂଅର ସ୍ୱଚ୍ଛ ପାଣିରେ ଝିଲିକର ଛାଇ ଦେଖି ସେ ଚମକିପଡ଼ି ଉପରକୁ ଚାହିଁ ଦେଖିଲା ମୁକ୍ତାଗଛ ଡାଳରେ ଜଣେ ସୁନ୍ଦର ଯୁବକ ବସିରହିଚି । ଦାସୀ ତାଙ୍କୁ ଅନାଇ ରହିଚି ଦେଖି ଝିଲିକ କହିଲେ—"ମତେ ବଡ଼ ଶୋଷ ଲାଗୁଚି, ଟିକେ ପିଇବା ପାଣି ଦେବ ?" ଏ କଥା ଶୁଣି ଦାସୀଟି ତର ତର ହୋଇ କୂଅରୁ ଲୋଟାଏ ପାଣି କାଢ଼ି ଦେଲା । ଝିଲିକ ଆଞ୍ଜୁଳା ଭରି ତହିଁରୁ ପାଣି ପିଇ

ଲୋଟାଟା ଫେରାଇଦେବା ସମୟରେ ଦାସୀର ଅଜାଣତରେ ନିଜ ହାତର ମୁଦିଟା ଲୋଟା ଭିତରେ ଗଳାଇଦେଲା । ଏ କଥା ନଜାଣି ଦାସୀ ଲୋଟାଟି ଧରି ସିଧାସଳଖ ରାଜକୁମାରୀଙ୍କ ପାଖରେ ଯାଇ ପହଞ୍ଚିଲା ।

ଲୋଟା ଭିତରୁ ପାଣି ଢାଳିବାକୁ ଯାଇ ମୁଦିଟି ଦେଖି ରାଜକନ୍ୟା ଦାସୀକୁ ଡକାଇ ପଚାରିଲେ—"ଏ ମୁଦି ତୁ କେଉଁଠୁ ପାଇଲୁ ? ଏ ମୁଦିରୁ ତ ମଣିଷ ଦେହର ବାସନା ବାହାରୁଚି । ମହିଦଅଣିଆରେ ଥିବା ଶାମୁକାପୁରୀକୁ ମଣିଷ ଆସିଲା କେଉଁଠୁ ?"

ଦାସୀ ଥରଥର କହିଲା—"ଜେମା, ଆଜ ଆପଣଙ୍କ ପାଇଁ ପାଣି ଆଣିବାକୁ କୂଅ ପାଖକୁ ଯାଇ ଦେଖିଲି କୂଅ ପାଣିରେ କାହାର ଗୋଟାଏ ଛାଇ ଦିଶୁଛି । ଏପଟ ସେପଟ ଅନାଇ ଶେଷରେ ଦେଖିଲି ଯେ ମୁକ୍ତାଗଛ ଉପରେ ଜଣେ ଅପୂର୍ବ ସୁନ୍ଦର ରଜାପୁଅ ବସିରହିଚନ୍ତି । ମୁଁ ତାଙ୍କୁ ଅନାଇବାରୁ ସେ ମତେ ପିଇବା ଲାଗି ପାଣି ମାଗିଲେ । ଲୋଟାଏ ପାଣି ମୁଁ ତାଙ୍କୁ ବଢ଼ାଇଦେବାରୁ ସେ ନିଜ ଆଞ୍ଜୁଳାରେ ଢାଳି ପାଣି ପିଇ ମତେ ଲୋଟାଟି ପୁଣି ଫେରାଇଦେଲେ । ଏବେ ବୁଝିପାରୁଚି ଯେ ମୋ ଅଜାଣତରେ ସେ କେତେବେଳେ ଲୋଟା ଭିତରେ ସେ ମୁଦିଟି ପକାଇଦେଇଚନ୍ତି ।"

ଏ କଥା ଶୁଣି ରଜାଝିଅ କହିଲା—"ମୁଁ ସେ ରଜାପୁଅକୁ ଦେଖିବି । ତୁ ମୋ ସାଙ୍ଗରେ ଚାଲ ।" ଦାସୀ ସାଙ୍ଗରେ ଫାଟକ ପାଖକୁ ଆସି ଶଙ୍ଖରାଜାଙ୍କ ଝିଅ ଏକା ଲୟରେ ଝିଲିକ କୁମାରକୁ ଦେଖିବାକୁ ଲାଗିଲା । ସେ ଏହା ପୂର୍ବରୁ ଏପରି ସୁନ୍ଦର ମଣିଷ କେବେହେଲେ ଦେଖିନଥିଲା । ତେଣୁ ଝିଲିକକୁ ଦେଖିବା ମାତ୍ରେ ରାଜଜେମା ଏକାବେଳକେ ମୁଗ୍ଧ ହୋଇଗଲା । କିଛି ସମୟ ପରେ ଝିଲିକର ନଜର ରଜାଝିଅ ଉପରେ ପଡ଼ିଗଲା । ମୁକ୍ତା ପରି ତାର ଦେହର ବର୍ଣ୍ଣ, ରେଶମ ପରି ତାର ମୁଣ୍ଡର ବାଳ ଓ ପ୍ରବାଳ ପରି ତାର ଓଠ ଦେଖି ଝିଲିକ ଅପଲକ ଆଖିରେ ତାକୁ ଚାହିଁରହିଲା । ଝିଲିକ ତାକୁ ଚାହିଁ ରହିଚି ଜାଣିପାରି ରଜାଝିଅ ସରମରେ ନଅର ଭିତରକୁ ପଳାଇଗଲା ।

ଏଣେ ଶଙ୍ଖରାଜ ଖବରପାଇଲେ ଯେ ତାଙ୍କ ନଅରରେ ମଣିଷ ଦେଶର ଜଣେ ରଜାପୁଅ ଆସି ପହଞ୍ଚିଛନ୍ତି । ଏ କଥା ଶୁଣିବା ମାତ୍ରେ ସେ ଲୋକବାକ ଧରି ଆସି ଝିଲିକ କୁମାରକୁ ଖୁବ୍ ଆଦରରେ ନଅର ଭିତରକୁ ପାଛୋଟି-ଆଣିଲେ । ହାତ ପାଦ ଧୁଆଇ, ସମୁଦ୍ର ତଳ ଶିଉଳରେ ତିଆରି ମଖମଲ

ପର ଗହଣରେ ବସାଇ ନାନା ଜାତିର ସୁସ୍ୱାଦୁ ମାଛ ରାନ୍ଧି ତାଙ୍କୁ ଖାଇବାକୁ ଦେଲେ । ତାପରେ କୁକୁଡ଼ା ଡ଼ିମ୍ୱ ପରି ବଡ଼ ବଡ଼ ଶହେଟା ମୁକ୍ତା ତାଙ୍କୁ ଉପହାର ଦେଲେ ଏବଂ କିଛିଦିନ ତାଙ୍କ ନଅରରେ ରହିଯିବା ଲାଗି ବାରମ୍ବାର ଅନୁରୋଧ କଲେ । ଯେଉଁ ଉଦ୍ଦେଶ୍ୟ ନେଇ ଝିଲିକ ସେଠାକୁ ଆସିଚି, ତାହା ପୂର୍ଣ୍ଣ ହୋଇନଥିବା ଯୋଗୁଁ ସେ ଶଙ୍ଖରାଜଙ୍କ କୁଣିଆ ହୋଇ ରହିବା ପାଇଁ ସଙ୍ଗେ ସଙ୍ଗେ ରାଜିହୋଇଗଲା ।

ଝିଲିକ କୁମାରକୁ ଦେଖିବା ଦିନଠୁଁ ରଜାଝିଅର ହାବଭାବ, ଚାଲିଚଳନ ଗୋଟାଏ ଵଚିତ୍ର ଧରଣର ହୋଇଗଲା । ପୂର୍ବପରି ସେ ଆଉ ହସ ଖୁସିରେ ରହିଲା ନାହିଁ । ଖେଳ କୌତୁକ, ନାଚ ଗୀତ, ଏପରିକି ଖିଆପିଆ ମଧ୍ୟ ସେ ଏକ ପ୍ରକାର ଛାଡ଼ିଦେଲା କହିଲେ ଚଳେ । ସବୁବେଳେ ଏକୁଟିଆ ବସି ମୁହଁକୁ ଶୁଖାଇ କ'ଣଗୁଡ଼ାଏ ଭାବୁଥାଏ; ସଖୀମାନଙ୍କଠୁଁ ଆରମ୍ଭ କରି ସ୍ୱୟଂ ରାଣୀ ଯେତେ ପ୍ରଶ୍ନ କଲେ ସୁଦ୍ଧା କୌଣସି ଉତ୍ତର ଦିଏ ନାହିଁ । ଶଙ୍ଖରାଜଙ୍କର ସେଇ ଗୋଟିଏ ଝିଅ ଛଡ଼ା ଆଉ ପିଲାପିଲି ନ ଥିଲେ · ଝିଅଟି ଥିଲା ତାଙ୍କ ହୃଦୟର ହାର । ତେଣୁ ତାର ଏ ପ୍ରକାର ବ୍ୟବହାର ଶୁଣି ସେ ନିଜ ରାଜ୍ୟର ସବୁ ବୈଦ୍ୟଙ୍କୁ ତାର ଚିକିତ୍ସାରେ ଲଗାଇଦେଲେ । କେତେ ପ୍ରକାର ଔଷଧ ଦିଆଗଲା, କେତେ ଚେଷ୍ଟା କରାଗଲା, ମାତ୍ର କାହିଁରେ କିଛି ଫଳ ମିଳିଲା ନାହିଁ । ଦିନକୁ ଦିନ ରଜାଝିଅ କଳା ପଡ଼ି ଶୁଖିଯିବାକୁ ଲାଗିଲା । ଝିଅର ଅବସ୍ଥା ଦେଖି ଶଙ୍ଖରାଜଙ୍କ ମନରେ ସୁଖନଥାଏ; ସେ ବି ଚିନ୍ତାରେ ଏକପ୍ରକାର ଖିଆ ପିଆ ଛାଡ଼ିଦେଲେ ।

ରଜାଝିଅକୁ ଥରେ ଦେଖିବା ପରଠୁଁ ଝିଲିକର ମନ ବି ପୁଣି ତାକୁ ଦେଖିବା ସକାଶେ ଉତ୍ତଳା ବିକଳ ହେଉଥାଏ । ପୁଣି ତା ସଙ୍ଗରେ ଭେଟ ହେବା ଲାଗି ସେ ନାନା ପ୍ରକାର ଚେଷ୍ଟା କରୁଥିଲେ ସୁଦ୍ଧା କୌଣସି ସୁଯୋଗ ମିଳୁନଥାଏ । ଦିନେ ଶଙ୍ଖରାଜ ମୁହଁ ଶୁଖାଇ ଦରବାରରେ ବସିଚନ୍ତି । ତାଙ୍କ ପାଖରେ ବସିଥାଏ ଝିଲିକକୁମାର । ରଜାଙ୍କର ଶୁଖିଲା ମୁହଁ ଦେଖି ସେ ହଠାତ୍ ପଚାରିଦେଲା—"ମହାରାଜ ! ଆପଣଙ୍କ ମନ ସୁଖ ନାହିଁ କି ?"

ଦୀର୍ଘ ନିଃଶ୍ୱାସଟାଏ ପକାଇ ନିଜ ଝିଅର ହାଲ ତାକୁ ଜଣାଇ ରଜା କହିଲେ—"ଏତେ ବୈଦ୍ୟ ଚେଷ୍ଟା କଲେଣି, ତଥାପି କିଛି ଫଳ ହେଉନି । ସତେ କ'ଣ ମୋ ଝିଅ ଭଲହେବନି ?"

ସୁଯୋଗ ବୁଝି ଝିଲକ କହିଲା—"ମହାରାଜ, ମୁଁ ଭାବୁଛି ଆମ ଦେଶର ବିଦ୍ୟା ବଳରେ ରାଜକୁମାରୀଙ୍କୁ ଭଲ କରି ଦେଇ ପାରିବି । ଆପଣ ଆଦେଶ ଦେଲେ ମୁଁ ଥରେ ଚେଷ୍ଟା କରି ଦେଖନ୍ତି ।"

ଶଙ୍ଖରାଜ ଖୁବ୍ ଖୁସିରେ ଏଇ ପ୍ରସ୍ତାବରେ ସଙ୍ଗେ ସଙ୍ଗେ ରାଜି ହେଲେ ଏବଂ ତାକୁ ଭିତର ମହଲରେ ଥିବା ରାଜକନ୍ୟାଙ୍କ ପାଖକୁ ପଠାଇଦେଲେ । ଝିଲକକୁ ଦେଖିବା ମାତ୍ରେ ରଜା ଝିଅର ରୋଗ ଅଧାଅଧି ଭଲହୋଇଗଲା । ଏହା ପରଠୁଁ ଝିଲକ ପ୍ରତିଦିନ ଦୁଇବେଳା ରଜାଝିଅ ପାଖରେ ବସି ମଣିଷ ଦେଶର ନାନା ପ୍ରକାର କଥା ଗପେ ଏବଂ ରଜାଝିଅ ଆଶ୍ଚର୍ଯ୍ୟ ହୋଇ ସେ ସବୁ ଶୁଣେ । ଏହିପରି ଭାବରେ ଆଠଦିନ ମଧ୍ୟରେ ରଜାଝିଅ ପୂରା ସୁସ୍ଥହୋଇ-ଗଲା ଏହା ଦେଖି ଶଙ୍ଖରାଜଙ୍କ ମନ ଆନନ୍ଦରେ ପୂରିଗଲା । ସମସ୍ତଙ୍କୁ ଡାକି ସେ କହିଲେ—"ଝିଲକ କୁମାରଙ୍କ ଲାଗି ମୋର ଏକମାତ୍ର ଝିଅର ଜୀବନ ରକ୍ଷାହୋଇଛି; ତେଣୁ ତାଙ୍କରି ସଙ୍ଗେ ମୁଁ ଝିଅକୁ ବାହା କରାଇଦେବି ।" ଦୁଇଦିନ ପରେ ଖୁବ୍ ଜାକଜମକ, ଧୁମ୍‌ଧାମ୍‌ରେ ରଜାଝିଅ ସଙ୍ଗେ ଝିଲକର ବାହାଘର ହୋଇଗଲା ।

ରଜାଝିଅକୁ ବାହାହୋଇ ଶାମୁକାପୁରୀରେ ଝିଲକର ଦିନ ଖୁବ୍ ସୁଖ ଓ ଆନନ୍ଦରେ କଟିଯାଉଥାଏ । ଅତଳ ସମୁଦ୍ର ଭିତରେ ରଜାଝିଅ ସଙ୍ଗରେ ବୁଲି ସେ କେତେ ନୂଆ ନୂଆ ଜିନିଷ ଦେଖେ । ପୁଣି ଜଳକନ୍ୟାମାନେ ନାନା ପ୍ରକାର ଗୀତ ଗାଇ ଓ ନାଚ ଦେଖାଇ ତା'ର ମନକୁ ମୁଗ୍‌ଧ କରିଦିଅନ୍ତି । ତଥାପି ବେଳେ ବେଳେ ଝିଲକର ମନେପଡ଼ିଯାଏ ନିଜ ଦେଶ ଓ ନିଜ ବାପ ମାଙ୍କ କଥା, ଆଉ ସେତିକବେଳେ ମନ ଦୁଃଖରେ ସେ ଗୋଟିଏ ଲେଖାଁ ଘନ ନିଃଶ୍ୱାସ ପକାଏ । ଦିନେ ରଜାଝିଅ ତା'ର ଏପରି ଘନ ନିଃଶ୍ୱାସ ପକାଇବାର ଦେଖି ଜାଣିପାରିଲା ଯେ ତା' ସ୍ୱାମୀ ମନରେ କିଛି ଗୋଟାଏ ଦୁଃଖ ରହିଛି । ସେ ତେଣୁ ଖୁବ୍ ସ୍ନେହରେ ତା'ର ହାତ ଦିଓଟି ଧରି କହିଲା—"ରାଜକୁମାର, ତୁମ ମନରେ ନିଶ୍ଚେ କିଛି ଦୁଃଖ ରହିଛି । କିଛି ନ ଲୁଚାଇ ସବୁ କଥା ମତେ ଫିଟାଇ କୁହ । ମୁଁ ନିଶ୍ଚୟ ତୁମକୁ ସାହାଯ୍ୟ କରିବି ।"

ଝିଲକ କହିଲା—ବହୁତ ଦିନ ହେଲା ନିଜ ଦେଶକୁ ଯାଇନି ବୋଲି ମୋର ମନ କଷ୍ଟ ହେଉଛି ।

ରଜାଝିଅ ଉତ୍ତର ଦେଲ—"ଏଥିପାଇଁ ଏତେ ଚନ୍ତା କରୁଚ କାହିଁକ ? ମୁଁ ସବୁ ବନ୍ଦୋବସ୍ତ କରଦେଉଚ । ତୁମେ କାଲ ନଜ ଦେଶକୁ ଯାଇ କେତେଦନ ବୁଲବୁଲ କର ଆସ ।"

ସେଠୁ ଝିଲକ ବାଧହୋଇ ଝଲକର ହଜଯାଇଥିବା ବନ୍ଶୀ କଣ୍ଟା କଥା ବର୍ଣ୍ଣନା କର କହଲ "ସେଇ କଣ୍ଟାଟା ସଙ୍ଗରେ ଧର ନଚଲେ ଭାଇ ମତେ ପିଟି ପିଟି ପ୍ରାଣରେ ମାରଦେବ ।"

ରଜାଝିଅ ସଙ୍ଗେ ସଙ୍ଗେ ଯାଇ ନଜ ବାପାଙ୍କୁ ସବୁ କଥା ଜଣାଇଦେଲ । ଜୋଇଁଙ୍କ ବପଦ କଥା ଶୁଣି ସଙ୍ଗେ ସଙ୍ଗେ ଶଙ୍ଖରାଜ ଯେଉଁ ମାଛ ସେଇ କଣ୍ଟାକୁ ଗିଳଛୁ ତାକୁ ଖୋଜ ଆଣିବାଲଗି ଆଦେଶଦେଲେ । ରଜାଙ୍କ ଆଦେଶ ପାଇବା କ୍ଷଣି ଶହ ଶହ ଦୂତ ସମୁଦ୍ର ଭତରେ ଚ୍ଚାରପଟକୁ ଖେଦଯାଇ ଯେଉଁ ମାଛ ଛ'ମାସ ତଳେ ଗୋଟାଏ ବନ୍ଶୀ କଣ୍ଟା ଗିଳଥିଲ ତାକୁ ଖୋଜବାକୁ ଲଗିଲେ । ଶେଷକୁ ଖବର ମିଳଲ ଯେ ପ୍ରାୟ ଛ'ମାସ ତଳେ ଗୋଟାଏ ବୁଢ଼ା ବାଳିଆ ମାଛ ତଣ୍ଟିରେ କ'ଣ ଗୋଟାଏ ଅଟକ ଯାଇଥିବା ଯୋଗୁଁ ସେହିଦନଠାରୁ ସେ ଭଲଭାବରେ ଖାଇପାରୁନାହିଁ ଏବଂ ସେଥିପାଇଁ ଖୁବ୍ ଦୁର୍ବଳ ହୋଇ-ଯାଇଚ । ଏହା ଶୁଣି କେତେଜଣ ଦୂତ ଯାଇ ବୁଢ଼ା ବାଳିଆକୁ ଧର ସଙ୍ଗେ ସଙ୍ଗେ ରଜାଙ୍କ ସାମନାରେ ହାଜରକଲେ । ବାଳିଆକୁ ଦେଖି ରଜା ପଚ୍ଚାରଲେ—"କହୋ, ତୁମର କ'ଣ ହୋଇଚ ?"

ଉତ୍ତରରେ ଥର ଥର ବାଳିଆ କହଲ—"ମହାରାଜ, ମୁଁ ଦନେ ସମୁଦ୍ର କୂଳରେ ଥିବା ଗୋଟାଏ ଖାଡ଼ରେ ବୁଲୁଥିଲ । ଏତକବେଳେ ଦେଖିଲ ଯେ ପାଣି ଭତରେ ପୋକଟାଏ ଦୋହଲୁଚ । ଲୋଭ ସମ୍ଭାଳ ନପାର ମୁଁ ସେଟାକୁ ଗିଳ ପକାଇବା ମାତ୍ରେ କ'ଣ ଗୋଟାଏ ମୁନିଆଁ ଜନଷ ମୋ ତଣ୍ଟିରେ ଅଟକ-ଗଲ । ସେଟା ଏଯାଏଁ ମୋ ତଣ୍ଟିରେ ରହ ମତେ ବଡ଼ କଲବଲ କରୁଚ ।"

ଏ କଥା ଶୁଣି ରଜା ସଙ୍ଗେ ସଙ୍ଗେ ଜଣେ ବୈଦ୍ୟଙ୍କୁ ଡକାଇ ଆଣିଲେ । ବାଳିଆର ତଣ୍ଟି ଭତରଟା ପରୀକ୍ଷା କର ବୈଦ୍ୟ ଚମୁଟା ହାର ତା' ଭତରୁ ସୂତା ଲଗିଥିବା ଗୋଟାଏ ବନ୍ଶୀ କଣ୍ଟା କାଢିଆଣିଲେ । ସେଟା ଦେଖିବା ମାତ୍ରେ ଝିଲକ ଖୁସିରେ କହପକାଇଲ—"ଆରେ, ଏଟା ତ ମୋ ଭାଇଙ୍କର ହଜଯାଇଥିବା ବନ୍ଶୀ କଣ୍ଟା !"

କଣ୍ଟାଟା ମିଳିଯିବାରୁ ଝିଲିକ ପରଦିନ ନିଜ ଦେଶକୁ ଯିବାଲାଗି ସଜବାଜ ହେବାରେ ଲାଗିଲା । ସେ ବାହାରିବା ପୂର୍ବରୁ ଶଙ୍ଖରାଜ ତାକୁ ନିଜ ପାଖକୁ ଡାକି କହିଲେ—"ରାଜକୁମାର, ମୁଁ ଜାଣିପାରୁଛି ଯେ ତୁମ ବଡ଼ଭାଇ ପ୍ରଚଣ୍ଡ ରାଗୀ । ସାମାନ୍ୟ ଗୋଟାଏ ବନ୍‌ଶୀ କଣ୍ଟା ପାଇଁ ତୁମକୁ ଏତେ ଦଣ୍ଡ ଦେଲେ । ମୋର ମନେହେଉଛି ତୁମେ ଫେରିଗଲେ ସେ ପୁଣି ତୁମକୁ ମାରିଦେବାକୁ ଚେଷ୍ଟାକରିବେ । ଏଇ ମୁକ୍ତା ଦି'ଟା ତୁମ ପାଖରେ ରଖିଥାଅ । ଯେତେବେଳେ ଦେଖିବ ତୁମ ବଡ଼ଭାଇ ତୁମକୁ ମାରିବା ଲାଗି ଆସୁଚନ୍ତି ସେତେବେଳେ ଏଇ ଧଳା ମୁକ୍ତାଟା ଟେକି ଧରିଲେ ସମୁଦ୍ର ଲହଡ଼ି ମାଡ଼ିଆସି ତାଙ୍କୁ ଭସାଇନେବ । ପୁଣି ଯେତେବେଳେ ନିଜ ଦୋଷ-ତ୍ରୁଟି ସେ କ୍ଷମାମାଗିବେ, ସେତେବେଳେ ଏଇ ଗୋଲାପୀ ମୁକ୍ତାଟା ଟେକି ଧରିଲେ ସବୁ ପାଣି ଶୁଖିଯିବ ।"

ମୁକ୍ତା ଦି'ଟା ସାଙ୍ଗରେ ଧରି ଝିଲିକ ନିଜ ଦେଶକୁ ବାହାରିଲା । ଛ'ମାସ ପରେ ଝିଲିକ ନିଜ ଦେଶରେ ଆସି ପହଞ୍ଚିଲା । ଏତେଦିନ ତାକୁ ନଦେଖି ବା ତା'ର କୌଣସି ଖବର ନପାଇ ରଜା ରାଣୀ ଓ ରାଜ୍ୟର ଲୋକେ ବଡ଼ ମନକଷ୍ଟରେ ଥିଲେ । ଝିଲିକ ଘରେ ପାଦ ଦେବାମାତ୍ରେ ରଜା ଓ ରାଣୀ ଧାଇଁ ଆସି ହଜିଲା ପୁଅକୁ କୁଣ୍ଢାଇପକାଇଲେ । ଖବର ପାଇ ପ୍ରଜାମାନେ ଦଳଦଳ ହୋଇ ତାକୁ ଭେଟିବାକୁ ଆସିଲେ । ଝିଲିକ ଯେତେବେଳେ ଶଙ୍ଖରାଜାଙ୍କ ଝିଅକୁ ବାହା ହେବା କଥା କହିଲା ଓ ସେ ସଙ୍ଗରେ ଆଣିଥିବା ବୋଝ ବୋଝ ମୁକ୍ତା ସମସ୍ତଙ୍କୁ ବାଣ୍ଟିଦେଲା, ସେତେବେଳେ ଲୋକମାନଙ୍କର ଆନନ୍ଦ କହିଲେ ନସରେ । ଝିଲିକର ଜୟ ଧ୍ୱନିରେ ଚାରିଆଡ଼ କମ୍ପି ଉଠିଲା ।

ଝଲକ ସେତେବେଳେ ବାହାରକୁ ଯାଇଥିଲା । କିଛି ସମୟ ପରେ ଘରକୁ ଫେରି ସବୁ ଶୁଣି ରାଗ ଓ ହିଂସାରେ ତା'ର ଦେହ ଜଳିଗଲା । ଝିଲିକ ପାଖକୁ ସିଧାସଳଖ ଚାଲିଯାଇ, ଭଲମନ୍ଦ କିଛି ନପଚାରି ସେ ଆଗ କହିଲା—"ମୋର ବନ୍‌ଶୀ କଣ୍ଟା ଆଣିଛୁ ତ ?" ଝିଲିକ ଟଙ୍ଗେ ଟଙ୍ଗେ ନିଜ ପୋଷାକ ଭିତରୁ ସୂତା ଲାଗିଥିବା ବନ୍‌ଶୀ କଣ୍ଟା କାଢ଼ି ଭାଇ ହାତକୁ ବଢାଇଦେଲା । ଏ ଘଟଣା ଦେଖି ଝଲକ ଚମକିପଡ଼ିଲା । ସେ ଭାବିଥିଲା ଝିଲିକ କଦାପି ବନ୍‌ଶୀ କଣ୍ଟା ଆଣିପାରିବ ନାହିଁ ଏବଂ ଫଳରେ ସବୁଦିନ ସେ ବାହାରେ ରହିବ । ନିଜ ବନ୍‌ଶୀ କଣ୍ଟା ଚିହ୍ନିପାରୁଥିଲେ ସୁଦ୍ଧା ସେ ରାଗରେ କହିଲା—"ଏଟା ତ ମୋର କଣ୍ଟା ନୁହେଁ; ଶୀଘ୍ର ମୋର କଣ୍ଟା ଆଣ ନହେଲେ ମୁଁ ଆଜି ତତେ

ମାର ଦେବ ।" ଏହା କହି ଅଣ୍ଟାରୁ ଖଣ୍ଡାଟା କାଢ଼ିଲା । ଝିଲିକ ଏହା ଦେଖି ଧଳା ମୁକ୍ତାଟା ଟେକିଧରିବାକ୍ଷଣି ପାହାଡ଼ ପରି ଲହଡ଼ ମାଡ଼ି ଆସି ଝଲକକୁ ଭସାଇନେଲା । ସେଇ ପାଣି ଭିତରୁ ଝଲକ ଉଦ୍ଧାର ପାଇବା ଲାଗି ଯେତେ ଚେଷ୍ଟା କଲା ସବୁ ବୃଥା ହେଲା । ଓଲଟି ଗୋଟାକ ପରେ ଗୋଟାଏ ଲହଡ଼ି ମାଡ଼ି ଆସି ତାକୁ ପାଣି ଭିତରେ ଉବୁଟୁବୁ କରିଦେଉଥାଏ । ଶେଷକୁ ନାଚାର ହୋଇ ଝଲକ ପ୍ରାଣ ବିକଳରେ ଡାକ ପକାଇଲା—"ଝିଲିକ୍ ! ଝିଲିକ୍ ! ମୋର ଦୋଷ ହୋଇଛି । ମୁଁ କ୍ଷମା ମାଗୁଛି । ମତେ ରକ୍ଷାକର ।" ସେ ଏକଥା କହିବା ମାତ୍ରେ ଝିଲିକ ଗୋଲାପୀ ମୁକ୍ତାଟା ଟେକି ଧରିବାରୁ ଆଖି ପଲକରେ ସବୁ ପାଣି ଶୁଖିଗଲା । ଝଲକ ରକ୍ଷାପାଇଗଲା ଏବଂ ସେଇଦିନଠାରୁ ସାନଭାଇ ପ୍ରତି ତା' ମନରୁ ରାଗ ଓ ହିଂସା ଲୋପପାଇଗଲା ।

## ଯେସାକୁ ତେସା

ଗୋଟିଏ ଗାଁରେ ବୁଢ଼ୀଟିଏ ଥାଏ । ବୁଢ଼ୀର ପିଲାପିଲି, ଆତ୍ମୀୟ ବନ୍ଧୁ କେହି ନଥାନ୍ତି । ତା'ର ବାଡ଼ିରେ ଦୁଇଟା କୋଳିଗଛ ଥାଏ । ସେ ଗଛ ଦୁଇଟାରେ ବର୍ଷ ତମାମ କୋଳି ଫଳେ । ପୁଣି ସେ କୋଳି ଯେପରି ମିଠା ସେହିପରି ରସରେ ଭରା । ସେଇ କୋଳି ବିକି ବୁଢ଼ୀ ନିଜର ଦାନା କନା ଯୋଗାଡ଼କରେ ।

ବୁଢ଼ୀଟି ବଡ଼ ଦାମା, ବଡ଼ ଦୟାଳୁ । ମଣିଷଠୁଁ ଆରମ୍ଭ କରି ପଶୁ ପକ୍ଷୀ ଯାଏ ସମସ୍ତଙ୍କ ପ୍ରତି ତା'ର ବଡ଼ ଦୟା । କୋଳି ବିକି ପେଟ ପୋଷୁଥିଲେ ସୁଦ୍ଧା ଗାଁ ପିଲାଙ୍କୁ କୋଳି ବାଣ୍ଟିବାରେ ବୁଢ଼ୀ କେବେହେଲେ ଲୋଭକରେନା । ତା'ଛଡ଼ା ବୁଢ଼ୀର ଗୋଟାଏ ଅଭ୍ୟାସ ଥିଲା, ନିତି ସକାଳୁ ଉଠି ତା' ବଗିଚାରେ ରୁଟି ଗୁଣ୍ଡ ବିଞ୍ଚି ଚଢ଼େଇମାନଙ୍କୁ ଖୁଆଇବା । ବୁଢ଼ୀର ଏଇ ସ୍ୱଭାବ କଥା ଚଢ଼େଇମାନେ ସୁଦ୍ଧା ଜାଣିଯାଇଥିଲେ । ତେଣୁ ପ୍ରତିଦିନ ରାତି ପାହିବା ମାତ୍ରେ ସାନ ବଡ଼ ନାନା ଜାତିର ପକ୍ଷୀ ବୁଢ଼ୀର ବଗିଚାକୁ ଉଡ଼ିଆସି ଚେଁ ଚୁଁ କେଁ କଟର ଆରମ୍ଭ କରିଦିଅନ୍ତି । ସେମାନଙ୍କର ସେଇ ରାବ ଶୁଣି ବୁଢ଼ୀର ନିଦ ଭାଙ୍ଗିଯାଏ; ତର ତର ହୋଇ ସେ ଶେଯରୁ ଉଠି ରୁଟି ଗୁଣ୍ଡ ଆଣି ଚଢ଼େଇ-

ମାନଙ୍କ ଆଗରେ ବୁଣିଦଏ । ଚଢ଼େଇମାନେ ଅଳ୍ପ ସ୍ନେହରେ ବେଳେବେଳେ ବୁଢ଼ୀର କୋଳ, କାନ୍ଧ ଓ ମୁଣ୍ଡ ଉପରେ ଆସି ବସୁଥିଲେ । ବୁଢ଼ୀ ବି ଏଇ ପକ୍ଷୀଗୁଡ଼ାକୁ ନିଜ ପିଲାପରି ଆଦର କରୁଥିଲା । ସେମାନଙ୍କ ଭିତରେ ଗୋଟିଏ ନାଲି, ନେଳି ଓ ଶାଗୁଆ ବର୍ଣ୍ଣ ମିଶା ପକ୍ଷୀ ବୁଢ଼ୀର ସବୁଠୁଁ ବେଶି ପ୍ରିୟ ଥିଲା । ବୁଢ଼ୀ ତାକୁ ବହୁତ ସମୟ କୋଳରେ ଧରି ଗେଲକରୁଥିଲା ଓ ଶ୍ରଦ୍ଧାରେ ତାକୁ 'ହୀରା' ବୋଲି ଡାକୁଥିଲା । ଚଢ଼େଇଟି ବି ବୁଢ଼ୀର ଏପରି ପୋଷାମାନିଯାଇଥିଲା ଯେ ବୁଢ଼ୀ 'ହୀରା' 'ହୀରା' ବୋଲି ଡାକିଲେ ସେ ଗଛ ଡାଳରୁ ଉଡ଼ିଆସି ତା' କୋଳରେ ବସୁଥିଲା ।

ବୁଢ଼ୀର ପଡ଼ୋଶୀ ଥାଏ ଗୋଟିଏ ଧୋବଣୀ । ସେ ଯେପରି ହିଂସୁକୁଟିଆ ସେହିପରି ନିଷ୍ଠୁର । ଗାଁସାରା ଲୋକଙ୍କ ମୁହଁରୁ ବୁଢ଼ୀର ପ୍ରଶଂସା ଶୁଣି ହିଂସାରେ ତା'ର ଦେହ ଆଉ ମନ ଜଳୁଥାଏ । କିପରି ବୁଢ଼ୀ ଉପରେ ଦାଉ ସାଧିବ ସବୁବେଳେ ତା'ର ସେଇ ଚିନ୍ତା । ଦିନେ ଧୋବଣୀ କିଛି ଧାନ ତା' ଅଗଣାରେ ଶୁଖାଇଥାଏ । ଏପରି ସମୟରେ ହୀରା ଉଡ଼ି ଯାଉଯାଉ ତଳେ ବିସ୍ତୃତହୋଇଥିବା ଧାନତକ ଦେଖି ଲୋଭରେ ତିନି ଚାରିଟା ଧାନ ଖୁମ୍ପି ଗିଳିଦେଲା । ଧୋବଣୀର ତ ବୁଢ଼ୀ ଉପରେ ବଡ଼ ରାଗ, ପୁଣି ସେ ଏକଥା ବି ଜାଣେ ଯେ ହୀରା ବୁଢ଼ୀର ଖୁବ୍ ପ୍ରିୟ । ତେଣୁ ଏଇ ସୁଯୋଗ ପାଇ ସେ ପାଦ ଚାପି ଚାପି ଚଞ୍ଚଳ ଆସି ଖପ୍‌କିନା ହୀରାକୁ ଧରିପକାଇ ତା' ମୁହଁକୁ ଗୋଟାଏ ଜଳନ୍ତା ଅଙ୍ଗାରରେ ମାଡ଼ିଦେଲା । ପ୍ରାଣପଣେ ଛଟିପିଟି ହୋଇ ହୀରା ଧୋବଣୀ ହାତମୁଠାରୁ ଖସିଗଲା ସିନା ମାତ୍ର ସେଇ ଚାଆଁରେ ତା' ବେକତଳର ପରତକ ପୋଡ଼ିଯାଇ ସେଠାରେ ଗୋଟାଏ ବଡ଼ ଘା' ହୋଇଗଲା । ଚଢ଼େଇର ଏଇ ଅବସ୍ଥା ଦେଖି ଧୋବଣୀ ବି ମନେ ମନେ ବଡ଼ ଖୁସି; ଯାହେଉ ଚଢ଼େଇଟା ଅଳ୍ପଦିନେ ନିଶ୍ଚେ ମରିଯିବ; ବୁଢ଼ୀ ଆଉ ତାକୁ ଗେଲକରିପାରିବନାହିଁ ।

ସତକୁସତ ପରଦିନ ହୀରା ଆଉ ଦେଖାଗଲାନାହିଁ । ବୁଢ଼ୀ ତାକୁ ଦିନସାରା ଅନାଇଁ ରହିଲା, ଥରକୁଥର ତା'ର ନାଁ ଧରି ଡାକିଲା; ମାତ୍ର ହୀରାର ଯୋଉ ଶବ୍ଦ କି ଦେଖା ଦର୍ଶନ କାହିଁ ହେଲେ ମିଳିଲାନାହିଁ । ବହୁତ ରାତିରେ ବୁଢ଼ୀ ହତାଶ ହୋଇ ଶୋଇବାକୁ ଗଲା, ମାତ୍ର ମନଦୁଃଖରେ ରାତିସାରା ତା' ଆଖିକୁ ନିଦ ଆସିଲାନାହିଁ । ପର ଦିନ ରାତି ନପାହୁଣୁ ବୁଢ଼ୀ ପଦାକୁ ବାହାରିଆସି ହୀରାକୁ ଅପେକ୍ଷା କରି ରହିଲା । ମାତ୍ର ସେଦିନ ବି ହୀରାର କୌଣସି ଠିକ୍ ମିଳିଲା

ନାହିଁ । ସେହିଦିନ ବୁଢ଼ୀ ମୁହଁକୁ ଆଉ ଅନ୍ନ ବି ରୁଚିଲା ନାହିଁ । ଦିନସାରା ଉପାସ ରହି ଓ ରାତିସାରା କାନ୍ଦି କାନ୍ଦି ବୁଢ଼ୀ ମନକୁମନ ସ୍ଥିରକଲା ଯେ ପରଦିନ ସକାଳୁ ଉଠି ସେ ଯେକୌଣସି ପ୍ରକାରେ ସ୍ପାରର ସନ୍ଧାନ କରିବ ।

ବୁଢ଼ୀ ପରଦିନ ବଡ଼ଭୋରରୁ ଉଠି ସ୍ପାରୋ ପାଇଁ ଘିଅରେ ଭଜା ମୁଠାଏ ରୁଟି ଗୁଣ୍ଡ କାନରେ ବାନ୍ଧି, ଗାଁ ଟପି ବଣ ଆଡ଼କୁ ଗ୍ଲଲା ସ୍ପାରକୁ ଖୋଜିବା-ପାଇଁ । ବଣ ଭିତରେ ପଶି ବାଘୁଣୀଙ୍କ ପରି ସେ କେତେ ଏପାଖ ସେପାଖ ହୋଇ 'ସ୍ପାର' 'ସ୍ପାର' ବୋଲି ଡାକପକାଇଲା । ଦି'ପହର ବେଳକୁ ଶ୍ରାନ୍ତିରେ ଜୁଡ଼ୁବୁଡ଼ ହୋଇ ବୁଢ଼ୀ ଗୋଟାଏ ଝଙ୍କାଳିଆ ବରଗଛ ଛାଇରେ ବସି ଶ୍ରାନ୍ତିମାରୁଥିବା ଓ ରହି ରହି 'ସ୍ପାର' 'ସ୍ପାର' ବୋଲି ଡାକୁଥିବା; ଏତିକିବେଳେ ପତ୍ର ଗହଳ ଭିତରୁ ସ୍ପାର ହଠାତ୍ ଖସିଆସି ତା' କୋଳ ଉପରେ ବସିପଡ଼ିଲା । ସ୍ପାରକୁ ଦେଖି କୋଟିନିଧି ପାଇଲା ପରି ବୁଢ଼ୀ ତାକୁ ଗେଲ କରିବାକୁ ଯିବା ସମୟରେ ହଠାତ୍ ତା'ର ନଜରପଡ଼ିଗଲା ସ୍ପାରର ବେକ ପାଖର ପୋଡ଼ା ଘା ଉପରେ । ତା'ର ଏ ଦୁର୍ଦ୍ଦଶା ଦେଖି ବୁଢ଼ୀର ଦୁଇ ଆଖିରୁ ଧାର ଧାର ହୋଇ ଲୁହ ଗଡ଼ିପଡ଼ିଲା । ଘା'ଟାକୁ ଆଉଁସି, ଫୁଙ୍କି ଦେଇ ସଙ୍ଗରେ ଆଣିଥିବା ରୁଟି ଗୁଣ୍ଡତକ ସ୍ପାରକୁ ପେଟ ପୂରାଇ ଖୁଆଇଦେଲା । ତା'ପରେ କହିଲା— "ତୁ ପୁଣି କାଲିଠୁ ଆସିବୁ ସ୍ପାର ।"

ମଣିଷଙ୍କ ପରି ସ୍ପାର ଜବାବ ଦେଲା—"ନା ବୁଢ଼ୀମା, ମୋ ଦେହ ବଡ଼ ଖରାପ । ଆଉ ମୁଁ ସେଇ ଧୋବଣୀ ଘର ପାଖକୁ ଯିବିନାହିଁ । ଏଣିକି ତୁମେ ସମୟସମୟରେ ଏଠିକି ଆସି ମୋ ସଙ୍ଗେ ଦେଖାକରିଯିବ ।"

ତା'ର ଅବସ୍ଥା ଦେଖି ତା' ବାଡ଼ିକୁ ଯିବାପାଇଁ ବଳାଇବା ଲାଗି ବୁଢ଼ୀର ଆଉ ସାହସ ହେଲାନାହିଁ । ତେଣୁ ସ୍ପାର ମୁହଁରେ ଗୋଟିଏ ଚୁମା ଦେଇ ବୁଢ଼ୀ କହିଲା—"ଥା' ସ୍ପାର ! ମୁଁ ଏବେ ଘରକୁ ଫେରିଯାଉଛି । ପୁଣି ପଅରଦିନ ତୋ ପାଇଁ ଭଲ ରୁଟିଗୁଣ୍ଡ ଧରି ଏଠିକି ଆସିବି ।" ଏହା କହି ସେ ଘରକୁ ଯିବାଲାଗି ଛିଡ଼ା ହେବାମାତ୍ରେ ସ୍ପାର କହିଲା—"ବୁଢ଼ୀମା, ଆଜି ପ୍ରଥମ ଥର ଲାଗି ତୁମେ ମୋ ଘରକୁ ଆସିଛ, ପୁଣି ମତେ କେତେ ରୁଟି ଗୁଣ୍ଡ ଖୁଆଇଛ । ମୁଁ ତୁମକୁ ଖାଲି ହାତରେ ବିଦା କରିବିନାହିଁ । ତୁମେ ଟିକେ ମୋ ସାଙ୍ଗରେ ଆସ ।" ଏହା କହି ସେ ବୁଢ଼ୀକୁ ଗଛ ପଛପଟେ ଥିବା ଗୋଟାଏ କୋରଡ଼ ପାଖକୁ ନେଇଗଲା । ବୁଢ଼ୀ ଦେଖିଲା ସେଇ କୋରଡ଼ ଭିତରେ ସୁନା ବଡ଼,

ମଧ୍ୟରେ ଅନେକ ବାକ୍ସ ଥୁଆହୋଇଛି । ହଂସ କହିଲା—“ଏଇ ବାକ୍ସଗୁଡ଼ାକ ଭିତରୁ ତୁମର ଯେଉଁଟା ଇଚ୍ଛା ନେଇଯାଅ ।” ବୁଢ଼ୀ ପ୍ରଥମେ ନାହିଁ ନାହିଁ କରୁଥିଲା, ମାତ୍ର ହଂସ ବହୁତ ବଳାଇବାରୁ ବୁଢ଼ୀ ଗୋଟିଏ ସାନ ପେଟରା ସାଙ୍ଗରେ ଧରି ନିଜ ଘରକୁ ଫେରିଆସିଲା ।

ଘରେ ପହଞ୍ଚି ବାକ୍ସଟା ଫିଟାଇ ବୁଢ଼ୀ ଦେଖିଲା ଯେ ତା’ ଭିତରେ ଟଙ୍କା ଭର୍ତ୍ତିହୋଇଛି । ମନ ଆନନ୍ଦରେ ବୁଢ଼ୀ ମୁଠାକୁ ମୁଠା ଟଙ୍କା କାଢ଼ି ଭଲ ଭଲ ଖେଳନା ଓ ମିଠାଇ କିଣି ପିଲାମାନଙ୍କୁ ବାଣ୍ଟିବାକୁ ଲାଗିଲା । ଆଉରି ଆଶ୍ଚର୍ଯ୍ୟର କଥା ସେ ଯେତେ ଟଙ୍କା କାଢ଼ୁଥିଲେ ସୁଦ୍ଧା ବାକ୍ସ ଭିତରେ ଥିବା ଟଙ୍କା କିଛି ହେଲେ କମୁନଥାଏ । ବାକ୍ସର ଏପରି କରାମତି ଦେଖି ବୁଢ଼ୀର ମନ ତ ଖୁସିରେ ଭରପୂର । ଗାଁ ସାରା ସମସ୍ତଙ୍କ ସାଙ୍ଗରେ ତ ବୁଢ଼ୀର ଭଲପାଇବା; ତେଣୁ ସମସ୍ତଙ୍କୁ ଡାକି ସେ ହଂସ ଦେଇଥିବା କୁହୁକ ବାକ୍ସଟି ଦେଖାଇ ସବୁ ଘଟଣା କହିଲା ଏବଂ ଯିଏ ଯେତେ ଟଙ୍କା ମାଗିଲା ତାକୁ ସେତେ ଦେଇଦେଲା । ଧୋବଣୀର ନିଷ୍ଠୁର ସ୍ୱଭାବ କଥା ଶୁଣି ଗାଁ ସାରା ଲୋକେ ତାକୁ ଛିଛିକାର କରିବାକୁ ଲାଗିଲେ ଏବଂ ବୁଢ଼ୀର ଦୟା ଓ ନିର୍ଲୋଭ ସ୍ୱଭାବ ଲାଗି ତା’ର ପ୍ରଶଂସା ମୁହଁଆଡ଼େ ଗାଇବୁଲିଲେ ।

ଧୋବଣୀ ଦେଖିଲା ଯେ ତ ପଦାରେ ପଡ଼ିଯାଇଛି, ଆଉ କେଉଁଠି ହେଲେ ତା’ର ମୁହଁ ଦେଖାଇବାର ଉପାୟ ନାହିଁ । ତଥାପି ଚଢ଼େଇ ଦେଇଥିବା କୁହୁକ ବାକ୍ସ କଥା ଶୁଣି ଆପେ ସେପରି ଗୋଟାଏ ବାକ୍ସ ପାଇବା ପାଇଁ ତା’ ମନ ଭିତରେ ଘାରି ଲୋଭହେଲା । ବଡ଼ କୌଶଳରେ, ବୁଢ଼ୀର ଅଜାଣତରେ ହଂସର ରହିବା ଠିକଣାଟା ଯୋଗାଡ଼କରି ଦିନେ ସକାଳୁ ନାନା ଜାତିର ଫଳ ଓ ମିଠା ଧରି ସେ ବଣକୁ ଗଲା । ହଂସର ଘର ପାଖରେ ପହଞ୍ଚି ଖୁବ୍ କଅଁଳ ସ୍ୱରରେ ସେ କହିବାକୁ ଲାଗିଲା—“ହଂସରେ ! ଶୀଘ୍ର ଆ । ତୋ ଲାଗି ମୁଁ କେତେ ଫଳ ଆଉ ମିଠା ଧରି ଆସିଛି; ଶୀଘ୍ର ଖାଇବୁ ଆ ।” ଏହାପରେ ଥରକୁଥର ଡାକିବା ପରେ ଶେଷକୁ ହଂସ ଖୁବ୍ ସାବଧାନରେ ଗଛରୁ ଓହ୍ଲାଇ ଧୋବଣୀଠୁ ପାଞ୍ଚହାତ ଦୂରରେ ଯାଇ ବସିଲା । ଧୋବଣୀ ତା’ ଆଗରେ ଫଳତକ ଥୋଇଦେଇ କହିବାକୁ ଲାଗିଲା “ଆରେ ହଂସ ! ସେଦିନ ମୁଁ ରାଗ ଦାଉରେ ତୋ ଦେହରେ ନିଆଁ ହୁଳା ମାଡ଼ିଦେଲି । ତା’ ପରଠୁ ଏ ଭୁଲ୍ କାମ ପାଇଁ ମୋ ମନରେ ବଡ଼ ଦୁଃଖ ହେଲା । ସେଦିନଠୁ କାଳ ମୁଁ କିଛି

ଖାଇଲନାହିଁ; ଖାଲି ବସି ବସି ତୋ କଥା ଭାବ କେତେ ଲୁହ ଗଡ଼ାଇଲି । ମୁଁ ତୋ ପାଖରେ ଦୋଷ ମାନୁଚି । ତୁ ମତେ କ୍ଷମା ଦେ । ତୁ କ୍ଷମା ନକଲେ ମୋ ମନ ସ୍ଥିର ହେଉନାହିଁ ।"

ଧୋବଣୀର ଏପରି ବକଳ ଦେଖି ସ୍ୱାମୀ କହିଲା—"ହଉ, ତୁମେ ଶାନ୍ତ ହୁଅ, ମୁଁ ତୁମର ଦୋଷ କ୍ଷମାକରିଦେଲି ।"

ଧୋବଣୀଟା ଆସିଥିଲା ବାକ୍ସ ପାଇବା ଲୋଭରେ । ତେଣୁ ଏକଥା ଶୁଣି ଆଉ ଅନ୍ୟ ପ୍ରସଙ୍ଗ ନ ପକାଇ ଛୁଟିହୋଇଗଲା ସେ କହିଲା—"ତେବେ ଘରର ସବୁ କାମ ବାକି ପଡ଼ିଚି । ଗୁଡ଼ାଏ ଲୁଗା ସଫା କରିବାର ଅଛି । ଖାଲି ତତେ ଦେଖିବ ବୋଲି ମୁଁ ସବୁ କାମ ପଛକୁ ପକାଇ ଏଠିକି ଚାଲିଆସିଲି । ଏଥର ଯାଉଚି ଘରକୁ ।"

ତଥାପି ଧୋବଣୀ ଯାଦେହେଲେ ଆଗେଇଲା ନାହିଁ । ଟିକେ ସମୟ ଗୁମ୍ ହୋଇ ଚଢ଼ିଆରଙ୍କ ଶେଷକୁ ସେ କହିପକାଇଲା—"ହଇରେ ସ୍ୱାମୀ, ଏତେ ବାଟରୁ ଏତେ ଫଳ ଓ ମିଠା ଧରି ମୁଁ ତୋ ଘରକୁ ଆଜ ପହିଲଥର ଲଗି ଆସିଲି; ଆଉ ଗଲାବେଳକୁ ତୁ ମୋତେ ଗୋଟାଏ କିଛି ଉପହାର ଦବୁ ନାହିଁ ? ତୁଚ୍ଛ ହାତଟାରେ ମତେ ବିଦାକରିବୁ ?"

ଏ କଥା ଶୁଣି ସ୍ୱାମୀ ତାକୁ ସେଇ କୋରଡ଼ ପାଖକୁ ନେଇଯାଇ କହିଲା— "ଯେଉଁ ବାକ୍ସଟା ତୁମର ଇଚ୍ଛା ଘରକୁ ନେଇଯାଅ ।"

ଧୋବଣୀଟା ସେ ଥାକ ଥାକ ବାକ୍ସ ଦେଖି ଲୋଭ ସମ୍ଭାଳି ନପାରି ବାଛି ବାଛି ସବୁଠୁ ବଡ଼ ବାକ୍ସଟା ବଡ଼ କଷ୍ଟରେ ମୁଣ୍ଡାଇ ଘର ବାଟ ଧରିଲା । ଗଲାବେଳେ ସ୍ୱାମୀକୁ ପଦେ ସୁଦ୍ଧା କହି ଗଲାନାହିଁ । ବାକ୍ସ ପାଇ ଧୋବଣୀ ମନଟା ବଡ଼ ଖୁସି । ଯା'ହଉ ଦୁଇପଦ ମିଠାକଥା କହି ବୋକା ଚଢ଼େଇଠାରୁ ଯେ ସବୁଠୁ ବଡ଼ ବାକ୍ସଟା ଖସାଇ ଆଣିପାରିଚି । ଏଣିକି ସେଇ ବୁଢ଼ାଠୁ ବି ତା'ର ଢେର୍ ବେଶି ଟଙ୍କା ହେବ । ଏହିପରି ନାନା ପ୍ରକାର ସୁଖ ସ୍ୱପ୍ନ ଦେଖୁ ଦେଖୁ ଘରେ ପହଞ୍ଚି ଧୋବଣୀ ପ୍ରଥମେ ଝରକା କବାଟ କିଳିଦେଇ ବାକ୍ସଟା ଫିଟାଇ ଦେଲା । ଏ କ'ଣ !! ବାକ୍ସଟା ଫିଟାଇବା ମାତ୍ରେ ତା' ଭିତରୁ କେଇଟା ଭୟଙ୍କର ଭୂତ ବାହାରିପଡ଼ି ଧୋବଣୀକୁ କାମୁଡ଼ି, ଚିମୁଟି, ବିଧା ଗୋଇଠା ମାରି ଦରମଲା କରିପକାଇଲେ । ତା'ର ବକଳ ରଡ଼ି ଶୁଣି ତା'ର

ପଡ଼ଶା ସେଇ ବୁଢ଼ୀ ଧାଇଁଆସି କବାଟ ଖୋଲି ଘର ଭିତରେ ପଶି ସବୁ ଘଟଣା ଦେଖିଲା । ସେ ଭୂତଗୁଡ଼ାଙ୍କୁ ନାନା ପ୍ରକାର ସ୍ତୁତି, ପ୍ରାର୍ଥନା କରିବାରୁ ଶେଷକୁ ସେମାନେ ଧୋବଣୀକୁ ଛାଡ଼ି ଚାଲିଗଲେ । ସେଇ ମାଡ଼ ଫଳରେ ଧୋବଣୀ ଦୁଇ ମାସ ଯାଏଁ ଖଟରୁ ଉଠି ପାରିଲା ନାହିଁ । ସେଇଦିନଠାରୁ ତା'ମନ ଭିତରେ ଥିବା ରାଗ ଆଉ ହିଂସା ପୂରାପୂରି ଲୋପପାଇଗଲା ।

## ଦର୍ପଣର କରାମତି

ପୁଂଜି ପାହାଡ଼ ପାଖରେ ଗୋଟାଏ ନିପଟ ମଫସଲ ଗାଁ । ସେଇ ଗାଁରେ ନିଜର ସ୍ତ୍ରୀ ପୁଅଟିକୁ ନେଇ ଜଣେ ଲୋକ ରହୁଥାଏ । ବାପ ପୁଅ ଛଡ଼ା ସେ ସଂସାରଟିରେ ଆଉ କେହି ନ ଥାଆନ୍ତି । ପୁଅଟି ଯେତେବେଳେ ଖୁବ୍ ସାନ, ହଠାତ୍ ତାର ମା ରୋଗରେ ପଡ଼ି ମରିଗଲା । ବାପ ପୁଅକୁ ନିଜ ପ୍ରାଣଠୁଁ ବଳି ସ୍ନେହ କରୁଥିବା ଯୋଗୁଁ ଆଉ ବିଭା ନହୋଇ ନିଜେ ଯତ୍ନ କରି ପୁଅଟିକୁ ମଣିଷକଲା । ପୁଅ ବି ବାପକୁ ବଡ଼ ସ୍ନେହ କରେ; ବାପ ବିନା ସେ ଦଣ୍ଡେ ସୁଦ୍ଧା ରହିପାରେନାହିଁ ।

ସଂପତ୍ତି ଭିତରେ ସେମାନଙ୍କର କୁଡ଼ିଆଟିଏ ଆଉ କେଇ ମାଣ ଜମି ଥାଏ । ସେହି ଜମି ଚଷି ଯାହା ଫସଲ ମିଳେ ସେଥିରେ ବାପ ପୁଅଙ୍କର ଦିନ କୌଣସି ପ୍ରକାରେ ଚାଲିଯାଏ । ତଥାପି ତାଙ୍କ ମନରେ ଟିକେ ହେଲେ ଦୁଃଖ ନ ଥାଏ; ଯାହା ଅଛି ତାକୁଇ ନେଇ ସେମାନେ ଶାନ୍ତିରେ ଥାଆନ୍ତି ।

କ୍ରମେ ବାପ ବୁଢ଼ା ହେବାକୁ ଲାଗିଲା ଆଉ ପୁଅ ବି କ୍ରମେ ଭେଣ୍ଡା ହୋଇଗଲା । ଏତିକବେଳକୁ ବୁଢ଼ାର ଚିନ୍ତା ଆରମ୍ଭ ହେଲା—"ମୁଁ ମରିଗଲେ ମୋ ପୁଅ ଚଳିବ କେମିତି ? କିଏ ଆଉ ତାର ଦେଖା ଶୁଣା କରିବ, ଯତ୍ନ ହେପାଜତ କରିବ ?" ଏପରି ଭାବି ଭାବି ଶେଷକୁ ବୁଢ଼ା ପୁଅକୁ ଡ଼ାକି କହିଲା—"ତୁ ଶୀଘ୍ର ବାହା ହୋଇପଡ଼ ।"

ପୁଅ ନାରାଜ । କହିଲା—"ନାହିଁ ବାପା, ଆମେ ବଡ଼ ଶାନ୍ତିରେ ଚଳି-ଯାଉଚେ । ବୋହୂଟାଏ ଆଣି ବୃଥାରେ ଝାମେଲା ବଢ଼ାଇ ଲାଭ କ'ଣ ?"

ମାତ୍ର ବୁଢ଼ା ବାପ ଜିଦ୍ କରି କହିଲା—"ତୁ ମୋର ଗୋଟିଏ ବୋଲି ପୁଅ । ତୁ ବାହା ହୋଇ ସଂସାରୀ ନହେଲେ ଆମ ବଂଶ ଲୋପପାଇଯିବ । ତାଛଡ଼ା ତୁ ଅବିବାହିତ ଥାଉ ଥାଉ ମୋ ପ୍ରାଣ ଛୁଟିଗଲେ ମୋ ଆତ୍ମା ମରଣ ପରେ ବି ଶାନ୍ତି ପାଇବନି ।"

ପୁଅ ତ ବାପକୁ ବହୁତ ଶ୍ରଦ୍ଧା କରେ, ତେଣୁ ବାପର ଏପରି କଥା ଶୁଣି ସେ ବାହା ହେବା ପାଇଁ ଶେଷରେ ରାଜି ହେଲା । ତା ପରେ ତା ବାପା ଗୋଟିଏ ସୁନ୍ଦରୀ ଝିଅ ବାଛି ତା ସଙ୍ଗେ ନିଜ ପୁଅକୁ ବାହା କରାଇଦେଲା । ବାହା ଘରର ଛ'ମାସ ପରେ ବୁଢ଼ା ଜ୍ୱରରେ ପଡ଼ିଲା । ଗାଁର ବୈଦ୍ୟଙ୍କୁ ଡ଼ାକି ଯେତେ ଚେଷ୍ଟା କଲେ ସୁଦ୍ଧା ଜ୍ୱର ଭଲହେଲାନାହିଁ । ଚାହୁଁ ଚାହୁଁ ବୁଢ଼ା ଆଉ ଶେଯରୁ ଉଠି-ପାରିଲାନାହିଁ । ପୁଅ ବୋହୂ ଦୁହେଁ ମିଶି ବାପର ବହୁତ ସେବା ଯତ୍ନ କଲେ । ରୋଗ ଭଲ କରିବା ଲାଗି ନାନା ପ୍ରକାର ଔଷଧ ଓ ପଥ୍ୟ ଦେଲେ, ମାତ୍ର କାହିଁରେ କିଛି ଫଳ ହେଲା ନାହିଁ । ମାସକ ପରେ ବୁଢ଼ା ସବୁଦିନ ପାଇଁ ଆଖିବୁଜିଦେଲା ।

ବାପ ମରିଯିବାରୁ ପୁଅ ଦୁଃଖରେ ଏକାବେଳକେ ଭାଙ୍ଗି ପଡ଼ିଲା । ପିଲାଟିଦିନୁଁ ଦୁନିଆରେ ସେ ବାପଛଡ଼ା ଆଉ କାହାକୁ ନିଜର ବୋଲି ଜାଣିନଥିଲା । ତେଣୁ ବାପ ଚାଲିଯିବାରୁ ସେ ବଡ଼ ବିକଳ ହୋଇପଡ଼ିଲା । ତାର ସ୍ତ୍ରୀ ତାକୁ ବହୁତ ସାନ୍ତ୍ୱନା ଦେଲା, ବହୁତ ବୁଝାଇଲା । ଶେଷକୁ ପୁଅ କାନ୍ଦ ବନ୍ଦକଲା ସତ, ମାତ୍ର ତା ମନଭିତରଟା ଶାନ୍ତ ହେଲାନାହିଁ । ସବୁବେଳେ ସେ ଚାହୁଁଥାଏ— କେଉଁ ଉପାୟରେ ହେଲେ ଥରକ ପାଇଁ ପୁଣି ବାପା ସାଙ୍ଗରେ ତାର ଭେଟ ହୋଇ-ଯାଆନ୍ତା କି ! ଥରକ ଲାଗି ଯଦି ସେ ତାର ବାପାକୁ ଦେଖିପାରନ୍ତା !

ପ୍ରତିଦିନ ସକାଳୁ ଉଠି ପୁଅଟି ବିଲକୁଯାଏ । ଦିନସାରା ବିଲରେ ନାନା କାମ କରୁଥିବା ଯୋଗୁଁ ବାପ କଥା ତାର ମନେପଡ଼େନାହିଁ । ମାତ୍ର ସଞ୍ଜ ପରେ ଘରକୁ ଫେରିବାମାତ୍ରେ ତା ମନ ଭିତରେ ବାପ ଲାଗି ଶୋକ ଉଚ୍ଛୁଳି ଉଠେ । ରାତିରେ ଶୋଇ ଶୋଇ ବାପ କଥା ମନେ ପକାଇ ସେ କାନ୍ଦେ, ଆଉ ଭାବେ ଥରେ ଭଲା ସେ ବାପକୁ ଦେଖିପାରନ୍ତାକି ! ତାର ଏପରି ଅବସ୍ଥା ଦେଖି ବହୁତ ଭାବି ଭାବି ଶେଷକୁ ତାର ସ୍ତ୍ରୀ କହିଲା—"ଶୁଣ କାମ କଥା ପଛକୁ ଥାଉ, ନିଜ ଜୀବନ ଆଗ । ତୁମେ କିଛି ଦିନ ଲାଗି ବିଦେଶ ଯାଇ ବୁଲି ଆସ; ତା'ହେଲେ ତୁମ ମନ ଭଲହୋଇଯିବ । ନ ହେଲେ ଏପରି ଭାବରେ ଚଳିଲେ ତୁମର ଦେହ

ଭାଙ୍ଗିପଡ଼ିବ ।'' ପୁଅ ମନକୁ ବି ଏକଥା ପାଇଲା । ଭାବିଲା, ନୂଆ ନୂଆ ଦେଶ ବୁଲିଲେ ହୁଏତ ତା ମନଟା ବଦଳିଯିବ ।

ଗାଁରୁ ବାହାରି ନାନା ଆଡ଼େ ବୁଲି ବୁଲି ଶେଷକୁ ନାଗାସାକି ସହରରେ ଆସି ପହଞ୍ଚିଗଲା । ନିପଟ ମଫସଲୀ ସେ; ଗାଁ ଛାଡ଼ି କେବେ ହେଲେ ପଦାକୁ ପାଦ କାଢ଼ିନଥିଲା । ତେଣୁ ନାଗାସାକି ପରି ଗୋଟାଏ ବଡ଼ ସହର ଦେଖି ତା'ର ଆଖି ଖୋସିହୋଇଗଲା । କେଡ଼େ ଓସାରିଆ ସୁନ୍ଦର ସଡ଼କ, ତା' ଉପରେ କେତେ ଗାଡ଼ି ଘୋଡ଼ା ଚାଲିଚନ୍ତି; ସଡକ ଦୁ' କଡ଼େ କେତେ ଉଚ୍ଚ କୋଠାମାନ, ଆଉ ଦୁଇପଟେ ନାନା ପ୍ରକାର ଶହ ଶହ ଦୋକାନ । ପୁଅଟି ଏସବୁ କାବା ହୋଇ ଦେଖୁ ଦେଖୁ ଗୋଟାଏ ମନୋହାରୀ ଦୋକାନ ସାମନାରେ ଛିଡ଼ାହୋଇଚି—ଏପରି ସମୟରେ ଚମକିପଡ଼ି ଦେଖିଲା ଯେ ସେଇ ଦୋକାନ ଭିତରେ ଗୋଟାଏ ଚାରିକୋଣିଆ ଧଳା ଜିନିଷ ଉପରେ ତା' ବାପର ମୁହଁଟି ଦିଶୁଚି । ଦୁ' ଆଖି ଭଲ ଭାବରେ ମଳି ମଳି ପୁଅଟି ପୁଣି ସେ ଆଡ଼େ ଚାହିଁ ଦେଖିଲା—ନା, ତା'ରି ବାପାର ମୁହଁ ସଫା ଦିଶୁଚି ।

ପ୍ରକୃତ କଥାଟା ହେଉଚି ଯେ ପୁଅଟିର ମୁହଁ ଠିକ୍ ତା' ବାପର ମୁହଁ ପରି । ମନୋହାରୀ ଦୋକାନରେ ଟଙ୍ଗାହୋଇଥିବା ଗୋଟାଏ ଦର୍ପଣରେ ନିଜ ମୁହଁଟା ଦେଖି ସେ ଭାବୁଥାଏ ଯେ ସେ ତା'ର ବାପକୁ ଦେଖୁଚି; କାରଣ ତାଙ୍କ ଗାଁରେ କାହାରି ହେଲେ ଗୋଟାଏ ଦର୍ପଣ ନଥିଲା ଏବଂ ଦର୍ପଣଟା ଯେ କିପରି ଜିନିଷ ସେ କଥା ମଧ୍ୟ ତାକୁ ଜଣାନଥିଲା । ତେଣୁ ଏଇ ମନୋହାରୀ ଦୋକାନରେ ନିଜର ହଜିଲା ବାପକୁ ଖୋଜି ପାଇ ପୁଅଟିର ଖୁସି କହିଲେ ନସରେ । ସେ ସଙ୍ଗେ ସଙ୍ଗେ ଦୋକାନୀଠାରୁ ସେଇ ଦର୍ପଣଟା କିଣିଆଣି ରାସ୍ତା କଡ଼ରେ ଥିବା ଗୋଟିଏ ଗଛ ମୂଳରେ ବସି ତା'ର ବାପାକୁ ଦେଖିବାକୁ ଲାଗିଲା । ପୁଅଟି ନିଜେ ବେଶ୍ ହୃଷ୍ଟପୃଷ୍ଟ, ବଳିଷ୍ଠ । ବେମାରରେ ପଡ଼ି ତା' ବାପା ମଲାବେଳକୁ ଖୁବ୍ ପତଳା ଓ ଦୁର୍ବଳ ହୋଇଯାଇଥିଲା । ମାତ୍ର ଏବେ ଦର୍ପଣରେ ନିଜ ମୁହଁ ଦେଖି ସେ ବିଚାରିଲା ଯେ ତା'ର ବାପା ସ୍ୱର୍ଗକୁ ଯାଇ ନିଶ୍ଚେ ଖୁବ୍ ସୁସ୍ଥ ହୋଇଯାଇଚନ୍ତି, ତେଣୁ ତାଙ୍କ ଗାଲଗୁଡ଼ାକ ପୂରିଯାଇଚ୍ଛି, ବାଳ କଳା ହୋଇଯାଇଚି ଆଉ ଆଖି ଦିଟା ବି କୋରଡ଼ ଭିତରେ ପଶି ଯାଇନାହିଁ । ବଡ଼ ଖୁସିରେ ସେ ଦର୍ପଣକୁ ଚାହିଁ—''ବାପା ! ତୁମେ ଭଲ ଅଛ ? ସେଠି କ'ଣ ଖାଉଚ ?'' ଏହିପରି ନାନା କଥା ମନକୁମନ ଗପି ଚାଲିଲା । ଏଣେ ସଡ଼କରେ ଯାଉଥିବା ଲୋକମାନେ ଏପରି ଘଟଣା ଦେଖି ତାକୁ ପାଗଳ

ବୋଲି ବଗୃରିଲେ ଏବଂ ବାଣ୍ଡରେ ବୁଲୁଥିବା କେତେକ ଦୁଷ୍ଟ ପିଲା ତା’ ଆଡ଼କୁ ଢେଲା ଫୋପାଡ଼ିବାକୁ ଲାଗିଲେ । ତେଣୁ ପୁଅଟି ଖଣ୍ଡେ ରେଶମ ରୁମାଲ କିଣି ସେଥିରେ ଦର୍ପଣଟିକୁ ଗୁଡ଼ାଇ ଖୁବ୍ ଯତ୍ନରେ ନିଜ ପୋଷାକ ଭିତରେ ରଖି ସିଧାସଳଖ ନିଜ ଗାଁକୁ ଫେରିଆସିଲା । ତା’ର ମନ ବାପକୁ ସେ ଫେରିପାଇଛି—ଆଉ ତା’ର ବିଦେଶ ବୁଲିବାର ଦରକାର କ’ଣ ? ଏଣିକି ତା’ର ମନଟା ଖୁବ୍ ଖୁସି ।

ଘରେ ପହଞ୍ଚି ସେଇ ଦର୍ପଣ କଥା ସେ କାହାକୁ ଏପରିକି ନିଜ ସ୍ତ୍ରୀକୁ ସୁଦ୍ଧା କହିଲାନାହିଁ । ଦର୍ପଣଟିକୁ ଖୁବ୍ ଯତ୍ନରେ ଗୋଟାଏ ପେଟିଏ ଭିତରେ ସେ ସାଇତି ରଖିଲା ଏବଂ ପ୍ରତିଦିନ ସକାଳେ ତା’ର ସ୍ତ୍ରୀ ରୋଷାଇ କାମରେ ବ୍ୟସ୍ତ ଥିବା ସମୟରେ ସେ ଦର୍ପଣଟିକୁ କାଢ଼ି ନିଜ ବାପା ସାଙ୍ଗରେ କେଇପଦ କଥାବାର୍ତ୍ତା ହୋଇସାରି ଗୃହ କାମକୁ ବାହାରିଯାଏ । ଏହିପରି ଭାବରେ କିଛି ଦିନ ବିତିଗଲା । କ୍ରମେ ତା’ ସ୍ତ୍ରୀ ଜାଣିପାରିଲା ଯେ ସେ ରୋଷାଇ ଶାଳରେ ଥିବା ସମୟରେ ତା’ ସ୍ୱାମୀ ଘର ଭିତରେ ବସି କାହା ସଙ୍ଗେ ମନକୁମନ ଗପୁଛି । ଦି’ ତିନିଥର ଏପରି ଘଟଣା ଦେଖି ତା’ ମନରେ ବଡ଼ ସନ୍ଦେହ ହେଲା । ଶେଷକୁ ଆଉ ନିଜକୁ ସମ୍ଭାଳି ନପାରି ଦିନେ ସେ ତାକୁ ପଚାରିଲା—“ଆଚ୍ଛା, ମୁଁ ରୋଷାଇ କରୁଥିବା ସମୟରେ ତୁମେ ସେଇ ଘରଭିତରେ କାହା ସଙ୍ଗେ ଗପସପ ହୁଅ କି ?”

ଏକଥା ଶୁଣି ତା’ର ହୃଦକ ଶୁଖିଗଲା । ସେ ଭାବିଲା ଏତେ କଷ୍ଟରେ ନିଜ ବାପକୁ ଘରକୁ ଫେରାଇ ଆଣିଥିଲା, ଏଥର ପୁଣି ହୁଏତ ତାକୁ ହରାଇବାକୁ ପଡ଼ିବ । ଏକଥା ଭାବିବାମାତ୍ରେ ତା’ର ଦେହ ହାତ ଥରିବାକୁ ଲାଗିଲା, ତା’ ପାଟିରୁ ପଦେହେଲେ କଥା ବାହାରିଲା ନାହିଁ । ତା’ର ଏପରି ଅବସ୍ଥା ଦେଖି ତା’ ସ୍ତ୍ରୀ ମନରେ ସନ୍ଦେହ ବଢ଼ିବାକୁ ଲାଗିଲା । ଖୁବ୍ ବିରକ୍ତ ହୋଇ ସେ ବଡ଼ପାଟିରେ କହିଲା—“ଏପରି ଚୋରଙ୍କ ପରି ହେଉଛ କାହିଁକି ? ଶୀଘ୍ର ମତେ ସବୁକଥା ଫିଟାଇ କୁହ, ନହେଲେ ମୁଁ ସାଇପଡ଼ିଶାଙ୍କୁ ଡାକି ଏ ଘଟଣାର ଗୋଟାଏ ମୀମାଂସା କରିବି ।”

ପରିସ୍ଥିତି ଗୋଳମାଳିଆ ଦେଖି ପୁଅଟି ବାଧ୍ୟ ହୋଇ ସବୁ କଥା ପ୍ରକାଶ କରି କହିଲା—“ନାଗାସାକି ସହରରେ ପହଞ୍ଚି ଗୋଟାଏ ଦୋକାନରେ ଖଣ୍ଡେ କୁହୁକ କାଚରେ ମୋ ବାପାଙ୍କୁ ମୁଁ ଦେଖିଲି । ଦୁଇଟଙ୍କା ଦେଇ ସେଇ କାଚ

ଖଣ୍ଡିକ କଣିଆଣି ମୁଁ ପେଡ଼ି ଭିତରେ ସାଇତିଛି । ନିତି ସକାଳୁ ଯିବା ଆଗରୁ ମୁଁ ପେଡ଼ି ଫିଟାଇ ସେଇ କାଚଟି କାଢ଼ି ବାପାଙ୍କୁ ଦେଖେ ଓ ତାଙ୍କୁ ଆମ ଘର ହାଲ, ମୋ ମନ କଥା ସବୁ କହେ ।"

ସେ ଏତେଗୁଡ଼ାଏ କଥା କହିଗଲା—ସବୁ ସତ, ତଥାପି ତା ସ୍ତ୍ରୀ ମନରୁ ସନ୍ଦେହ ଗଲାନାହିଁ । ତେଣୁ ପରଦିନ ସକାଳୁ ପୁଅଟି ହଳକୁ ବାହାରି ଯିବା ମାତ୍ରେ ତା'ର ସ୍ତ୍ରୀ ଘରକାମ ବନ୍ଦରଖି, ସେମାନଙ୍କ ଶୋଇବା ଘରେ ପଶି ପେଡ଼ିଟା ଫିଟାଇ ସେଇ କୁହୁକ କାଚ ଦେଖିବାକୁ ଲାଗିଲା । କିନ୍ତୁ ସମସ୍ତ ଦରାଣ୍ଡିବା ପରେ, ପେଡ଼ି ତଳୁ ରେଶମୀ ରୁମାଲରେ ଗୁଡ଼ାହୋଇଥିବା ପୁଡ଼ିଆଟି ସେ ପାଇଲା । ପୁଡ଼ିଆଟି ଫିଟାଇ ଦେଖିଲା ସତକୁ ସତ ତା ଭିତରେ ଗୋଟାଏ ଗୋଲକୋଣିଆ କାଚ । କାଚଟା ଦେଖିବା ମାତ୍ରେ ତାର ମଧ୍ୟ ବଡ଼ ମନହେଲା ନିଜ ଶଶୁରଙ୍କୁ ଥରେ ଦେଖିବାପାଇଁ । ତେଣୁ ସେ ତରବରରେ କାଚ ଖଣ୍ଡିକ ନିଜ ମୁହଁ ସାମନାରେ ଟେକିଧରିଲା । ଟେକିଧରିଲା ସିନା, ମାତ୍ର ପରମୁହୂର୍ତ୍ତରେ ରାଗ ଆଉ ଦୁଃଖରେ ତାର ହାତ ପାଦ ଥରଥରହୋଇଗଲା । ସେ ସଫା ଦେଖିଲା ସେଇ କାଚ ଭିତରେ ଗୋଟିଏ ଅଳ୍ପ ବୟସୀ ସୁନ୍ଦରୀ ଝିଅର ମୁହଁ । ଏ ଦୃଶ୍ୟ ଦେଖି ତା ଛାତି ଭିତରଟା ଫାଟି ଗଲାପରି ତାକୁ ଜଣାଗଲା । ତା ସ୍ୱାମୀ ବୁଝି ତା ଆଗରେ ମିଛ କଥା କହିଲେ ! ତେବେ କ'ଣ ତାର ସ୍ୱାମୀ ତା ଅପେକ୍ଷା ଏଇ ଝିଅଟାକୁ ବେଶି ସ୍ନେହକରନ୍ତି ଆଉ ସେଇଥିପାଇଁ ତାକୁ ଏତେ ଯତ୍ନରେ ରେଶମ କନାରେ ଗୁଡ଼ାଇ ପେଡ଼ି ଭିତରେ ସାଇତିରଖିଦେଇଛନ୍ତି ? ଆଉ ସେ ପଚାରିଲା ବେଳକୁ ମିଛଟାରେ 'ମୁଁ ମୋର ବାପାଙ୍କୁ ଦେଖୁଛି' କହି ଭଣ୍ଡି ଦେଉଛନ୍ତି ?

ରାଗରେ ତା ସ୍ତ୍ରୀର ବୁଦ୍ଧି ହଜିଗଲା । ଚୁଲି ଲିଭାଇ, ଘରକାମ ବାସ କିଛି ନକରି ଦର୍ପଣଟାକୁ ନିଜ ପାଖରେ ରଖି ସେ ଗୁମ୍ ହୋଇ ବସିରହିଲା । ଦିନ ଦିପହର ବେଳେ ଖାଇବା ଲାଗି ଆସି ପୁଅଟି ଦେଖିଲା ଯେ ଘରେ ଘରକାମ-ବାସ କିଛି ହୋଇନାହିଁ, ଆଉ ତାର ସ୍ତ୍ରୀ ମୁହଁଟା ହାଣ୍ଡିଭଳି କରି ବସିରହିଛି । ତାକୁ ଦେଖିବାମାତ୍ରେ ତା ସ୍ତ୍ରୀ ରାଗରେ ଗର୍ଜି ଉଠି କହିଲା—"ତୁମେ ଘାର ଖରାପଲୋକ, ମତେ ଖାଲି ମିଛକଥା କହି ଭଣ୍ଡୁଛ ।"

କାବା ହୋଇ ପୁଅଟି ପଚାରିଲା—"କ'ଣ ମିଛ କଥା ମୁଁ ତୁମକୁ କହିଛି ଯେ ଏତେ ବିରକ୍ତ ହେଉଛ ?"

ସେଠୁ ଦର୍ପଣଟା ତା ହାତକୁ ବଢ଼ାଇ ଦେଇ ତା ସ୍ତ୍ରୀ କହିଲା—"ଦେଖିଲ, ଏଇ କ'ଣ ତୁମର ବାପା ?"

ଦର୍ପଣରେ ନିଜ ମୁହଁଟା ଦେଖି ଦେଖି ପୁଅଟି ନିଶ୍ଚିନ୍ତ ଭାବରେ ଜବାବ-ଦେଲା—"ହଁ, ଏଇତ ମୋର ବାପା ।"

ରାଗରେ ଅସମ୍ଭାଳ ହୋଇ ତା ହାତରୁ ଦର୍ପଣଟା ଛଡ଼ାଇଆଣି, ନିଜ ମୁହଁ ଆଗରେ ଧରି, ନିଜ ଗୁଇଟାକୁ ଆଙ୍ଗୁଠିରେ ଗେଞ୍ଜି ଗେଞ୍ଜି ଖୁବ୍ ଚଡ଼ା ଗଳାରେ ସେ କହିଲା—"ଏଇ ସ୍ତ୍ରୀଲୋକଟା କ'ଣ ତୁମର ବାପା ? ତୁମ ବାପା ପୁରୁଷ ନା ସ୍ତ୍ରୀ ? ମତେ କ'ଣ ଦୁଧଖିଆ ଛୁଆ ପାଇଚ ଯେ ଏଣୁ ତେଣୁ ଗୁଡ଼ାଏ ଗପି ଭୁଲେଇଦେବ ?"

ପୁଅଟି ବି ଏଥର ରାଗିଯାଇ କହିଲା—"ମୁଁ କ'ଣ ଅନ୍ଧ ଯେ ଗୋଟାଏ ସ୍ତ୍ରୀଲୋକକୁ ମୋର ବାପା ବୋଲି କହୁଚି ?"

"ନା, ଅନ୍ଧ ନୁହଁ, ତୁମେ ମିଛୁଆ ! ଏଇ ସ୍ତ୍ରୀଲୋକଟିକୁ ତୁମେ କଣିଆଣି ସାଇତିରଖିଚ, ତା'ରି ସାଙ୍ଗରେ ଗପୁଚ ଆଉ ମୁଁ ପଚାରିବାରୁ ମତେ ଏଣୁ ତେଣୁ ମିଛକଥା କହୁଚ ।"

"ନା ମୁଁ ମିଛ କହୁ ନାହିଁ; ତୁମେ ମିଛ କହୁଚ ।"

"ତୁମେ ଠକ ।"

"ତୁମେ ପାଗଳ ।"

କ୍ରମେ କ୍ରମେ ତାଙ୍କ ଝଗଡ଼ା ବଢିଯାଇ ଶେଷକୁ ଦୁହେଁ ରାଗରେ ଘରର ଜିନିଷ ପତ୍ର ଭଙ୍ଗା ଫୋପଡ଼ା ଆରମ୍ଭକଲେ । ସେମାନଙ୍କ ପାଟି ଶୁଣି ଓ ଏପରି ଫିଙ୍ଗା ଫୋପଡ଼ା ଦେଖି ପଡ଼ଶାଲୋକେ ଧାଇଁଆସି ଦୁହିଙ୍କୁ ଅଲଗା କରିଦେଇ ଘଟଣା କ'ଣ ପଚାରିଲେ । ପୁଅଟି କହିଲା, ତାର କିଛି ଦୋଷନାହିଁ, ସହରରେ ଖଣ୍ଡେ କୁହୁକ କାଚରେ ତାର ବାପା ଥିବାର ଦେଖି ସେ'ଟି ସେ କିଣିଆଣି ନିଜ ପାଖରେ ସାଇତି ରଖିଚି । ମାତ୍ର ତାର ସ୍ତ୍ରୀ କାନ୍ଦି କାନ୍ଦି କହିଲା ଯେ ଏଗୁଡ଼ାକ ସବୁ ମିଛକଥା, ସେଇ କାଚଟା ଭିତରେ ଆଉ ଗୋଟିଏ ସ୍ତ୍ରୀଲୋକ ରହିଚି ଏବଂ ତାକୁହିଁ ତା'ର ସ୍ୱାମୀ ଖୁବ୍ ଯତ୍ନରେ ନିଜ ପେଡ଼ିରେ ରଖିଚି । ତା ସାଙ୍ଗରେ ସେ ନିତି କେତେ କଥା ଗପେ, ମାତ୍ର ପଚାରିବାରୁ ମିଛରେ କହୁଚି ଯେ ସେ ତା'ର ବାପାଙ୍କ ସଙ୍ଗେ କଥା ହେଉଚି ।

ଦୁହିଙ୍କ କଥା ଶୁଣି ପଡ଼ୋଶୀମାନେ ବି ଆବା କାବା ହୋଇଗଲେ । ଶେଷକୁ ଜଣେ ବୁଢ଼ା ଲୋକ କହିଲେ—"ଏ ବଡ଼ ଗୋଲମାଳିଆ ଘଟଣା । ଗାଁ

ମୁଣ୍ଡ ବୃକ୍ଷ ମନ୍ଦିରରେ ଜଣେ ସନ୍ନ୍ୟାସିନୀ ଅଛନ୍ତି । ସବୁ ପ୍ରକାର ବିଦ୍ୟା ତାଙ୍କୁ ଜଣା । ତୁମେ ଦୁହେଁ କାଚ ଖଣ୍ଡିକ ନେଇ ତାଙ୍କ ପାଖକୁ ଗଲେ ସେ ନିଶ୍ଚେ ଏହାର ଗୋଟାଏ ମୀମାଂସା କରିଦେବେ ।"

କଥାଟା ସ୍ୱାମୀ ଓ ସ୍ତ୍ରୀ ଦୁହିଙ୍କ ମନକୁ ପାଇଲା । ସେଠୁ ଦର୍ପଣଟି ସଙ୍ଗରେ ଧରି ଦୁହେଁ ସିଧା ସିଧା ମନ୍ଦିରକୁ ଯାଇ ସନ୍ନ୍ୟାସିନୀଙ୍କ ପାଦତଳେ ପଡ଼ି ନିଜ ନିଜର ଗୁହାରି ଜଣାଇଲେ । ଦୁହିଙ୍କ କଥା ଶୁଣିସାରି ସନ୍ନ୍ୟାସିନୀ କହିଲେ—"ପ୍ରଥମେ ମୋ ହାତକୁ ସେଇ କୁହୁକ କାଚ ଖଣ୍ଡିକ ଦିଅ । ସେଟିକୁ ମୁଁ ଟିକେ ଭଲଭାବରେ ଦେଖିବି ।"

ଏ କଥା ଶୁଣି ପୁଅଟି ତାଙ୍କ ହାତକୁ ଦର୍ପଣଟା ବଢ଼ାଇଦେଲା । ଦର୍ପଣଟା ଦେଖିବା ମାତ୍ରେ ସନ୍ନ୍ୟାସିନୀ ଚମକିପଡ଼ିଲେ, ତା'ପରେ ଦଣ୍ଡେ ଚୁପ୍ ରହି କହିଲେ—"ତୁମ ଦୁହିଙ୍କ କଜିଆ ଦେଖି ତୁମ ବାପା ପୁଣି ସ୍ୱର୍ଗକୁ ପଳାଇ-ଯାଇଚନ୍ତି, ଆଉ ଝିଅଟି ମନ କଷ୍ଟରେ ହଳଦିଆ ଲୁଗା ପିନ୍ଧି ମୁଣ୍ଡ ଲଣ୍ଡା ହୋଇ ସନ୍ନ୍ୟାସିନୀ ସାଜିଚି । ଏଣିକି ସେ ଆଉ ତୁମ ସଙ୍ଗରେ ଯିବନାହିଁ; ମୋ ପାଖରେ ମନ୍ଦିରରେ ରହିବ ।" ଏହା କହି ଦର୍ପଣଟି ନିଜ ପାଖରେ ରଖିନେଲେ ।

ବାଧ୍ୟ ହୋଇ ସ୍ୱାମୀ ସ୍ତ୍ରୀ ଦୁହେଁ ଖାଲିହାତରେ ଘରକୁ ଫେରିଲେ । ସ୍ତ୍ରୀର ମନ ବଡ଼ ଖୁସି—ଯା' ହଉ ଝିଅଟା ହାତରୁ ରକ୍ଷା ମିଳିଚି । ମାତ୍ର ପୁଅଟି ମନ ବଡ଼ ଦୁଃଖୀ; ତା'ର ହଜିଲା ବାପାକୁ ଏତେଦିନ ପରେ ପାଇ ସୁଦ୍ଧା ସେ ପାଖରେ ରଖିପାରିଲାନାହିଁ ।

## କୁକୁର କାହାଣୀ

ଗୋଟିଏ ଗାଁରେ ବୁଢ଼ାଟିଏ, ବୁଢ଼ୀଟିଏ ଥିଲେ । ସେମାନଙ୍କର କିଛି ପିଲାପିଲି ନଥିଲେ । ସେମାନଙ୍କର ଗୋଟିଏ ପୋଷା କୁକୁର ଥିଲା । ସେଟିକୁ ଦୁହେଁ ନିଜ ପୁଅ ପରି ଯତ୍ନରେ ପାଳିଥିଲେ । କୁକୁରଟି ବି ବୁଢ଼ା ବୁଢ଼ୀଙ୍କୁ ଭାରି ସ୍ନେହ କରୁଥିଲା । ସେମାନଙ୍କ ପାଖ ଛାଡ଼ି ଆଉ କେଉଁଠିକି ହେଲେ ଯାଉନଥିଲା । ପ୍ରତିଦିନ ବୁଢ଼ୀ ରାନ୍ଧିସାରି ଆଗ ବୁଢ଼ା ଆଉ ସେଇ କୁକୁରଟିକୁ ବାଢ଼ିଦିଏ ।

ଦୁହେଁ ପେଟପୂରା ଖାଇସାରିଲେ ଯାହା ରହେ ସେତକ ନିଜେ ଖାଏ । ରାତିରେ କୁକୁରକୁ ନିଜ ପାଖରେ ଶୁଆଇ କେତେ ଆଉଁସି ଦିଏ, କେତେ ଗେଲକରେ ।

ଦିନେ ରାତିରେ ବୁଢ଼ୀ ସ୍ୱପ୍ନ ଦେଖିଲା ଯେ ସେ ଆଉ ବୁଢ଼ା ଗୋଟାଏ ଘୋର ବଣକୁ ଯାଇଚନ୍ତି । ସେମାନଙ୍କ ସାଙ୍ଗରେ କୁକୁରଟି ବି ରହିଚି । ସେଇ ବଣ ଭିତରେ କୁକୁରଟା ସେମାନଙ୍କୁ ବାଟ କଢ଼ାଇ ନେଇଯାଉଚି । ଚାଲୁ ଚାଲୁ ସେମାନେ ଗୋଟାଏ ମସ୍ତବଡ଼ ପାହାଡ଼ ପାଖରେ ଆସି ପହଞ୍ଚିଲେ । ସେଇ ପାହାଡ଼ରେ ଥିବା ଗୋଟାଏ ଗୁହା ଭିତରେ କୁକୁରଟା ପଶିଗଲା । ତା' ପଛେ ପଛେ ସେ ଦୁହେଁ ଗୁହା ଭିତରେ ପଶି ଦେଖିଲେ ଯେ ସେଠି ଅସୁମାରି ହୀରା, ନୀଳା, ସୁନା, ରୁପା ଗଦା ଗଦା ହୋଇ ରହିଚି । ସେମାନେ କାବା ହୋଇ ସେଇ ଧନ ରତ୍ନ ଦେଖୁଚନ୍ତି, ଏପରି ସମୟରେ ବୁଢ଼ୀର ନିଦଟା ଭାଙ୍ଗିଗଲା । ସକାଳୁ ଉଠି ବୁଢ଼ୀ ବୁଢ଼ାକୁ ସେ ଦେଖିଥିବା ସ୍ୱପ୍ନ କଥା କହିଲା । ସବୁ ଶୁଣି ବୁଢ଼ା ମଧ୍ୟ ଖୁବ କାବାହୋଇଗଲା ।

କିଛି ଦିନ ଗଲା । ଦିନେ କାଠ କାଟିବା ଲାଗି ବୁଢ଼ା ବଣକୁ ଯାଇଚି— ଆଉ ତା' ସାଙ୍ଗରେ ଯାଇଚି ତା'ର କୁକୁରଟା । କିଛି ସମୟ କାଠ କାଟିସାରି ବୁଢ଼ା ଗୋଟାଏ ଗଛ ତଳେ ବସି ବିଶ୍ରାମକରୁଚି, ଏପରି ସମୟରେ ସେ ଦେଖିଲା ଯେ ହଠାତ୍ ତା'ର କୁକୁରଟା ପାଖରେ ଥିବା ଗୋଟାଏ ବଡ଼ ଗଛ ମୂଳକୁ ଧାଇଁଯାଇ ସେଠିକାର ମାଟିକୁ ନଖରେ ରାମ୍ପିବାକୁ ଲାଗିଲା । ସେ କିଛି ସମୟ ମାଟି ରାମ୍ପି ବୁଢ଼ା ପାଖକୁ ଧାଇଁଆସି ତା' ମୁହଁକୁ ଟିକେ ଅନାଇଁ ପୁଣି ସେଇ ଗଛ ମୂଳକୁ ଫେରିଯାଇ ପୁଣି ମାଟି ରାମ୍ପିବାକୁ ଲାଗିଲା । ଥରକୁଥର ଏହିଭଳି କେତେବାର କଲାପରେ ବୁଢ଼ା ମନରେ ବି କୌତୂହଳ ହେଲା । ସେ କୁକୁର ରାମ୍ପୁଥିବା ସ୍ଥାନକୁ ଯାଇ ମାଟି ଖୋଳିବାକୁ ଆରମ୍ଭ କଲା । କିଛି ସମୟ ମାଟି ଖୋଳିବା ପରେ ବୁଢ଼ାର କୁରାଢ଼ିଟା କ'ଣ ଗୋଟାଏ ଟାଣୁଆ ଜିନିଷରେ ବାଜିଲା । ହାତ ପୂରାଇ ବୁଢ଼ା ଦେଖିଲା ଗୋଟାଏ ପିତଳ ଗରା ରହିଚି । ବୁଢ଼ା ଦୁଇ ହାତରେ ଗରାଟାକୁ ଭିଡ଼ି କାଢ଼ିଆଣି ଦେଖିଲା ଯେ ତା' ଭିତରେ ସୁନା ମୋହର ଭର୍ତ୍ତି ହୋଇ ରହିଚି । ବୁଢ଼ା ବୁଝିପାରିଲା ଯେ ବୁଢ଼ୀ ଦେଖିଥିବା ସ୍ୱପ୍ନଟି ସତରେ ଫଳିଗଲା ।

ସେଦିନ ଆଉ କାଠ ନ କାଟି ମୋହର ଭର୍ତ୍ତିହୋଇଥିବା ଗରାଟି ମୁଣ୍ଡାଇ ଘରକୁ ଫେରି ବୁଢ଼ା ବୁଢ଼ୀକୁ ସବୁ କଥା କହିଲା । ଏତେ ସମ୍ପତ୍ତି ପାଇ ଦୁହିଁଙ୍କର

ଆନନ୍ଦ କହିଲେ ନସରେ । ପ୍ରଥମେ ଦୁହେଁ କୁକୁରଟାକୁ ଥୋଡ଼ାଏ ଲେଖାଁ ଗେଲକଲେ, ତା'ପରେ ମୋହରଗୁଡ଼ାକ ଘର ଭିତରେ ଥୋଇ କେମିତି କ'ଣ କରିବେ ସେ କଥା ବିଚାର କରିବାକୁ ଲାଗିଲେ ।

ଏହା ପରେ ପରେ ସେମାନେ ବହୁତ ଚାଷ ଜମି, ଗାଈ ବଳଦ କିଣିଲେ, ଭଲ ଘରଟିଏ ତିଆରିକଲେ । ଗାଁସାରା ସମସ୍ତେ ଜାଣିଗଲେ ଯେ କୁକୁର ଲାଗି ଗୁପ୍ତଧନ ପାଇ ବୁଢ଼ା ବୁଢ଼ୀଙ୍କର ଭାଗ୍ୟ ଶେଷ ବୟସକୁ ବଦଳିଗଲା । ଗାଁର ସମସ୍ତେ ବୁଢ଼ାବୁଢ଼ୀଙ୍କୁ ସ୍ନେହ ଶ୍ରଦ୍ଧା କରୁଥିବାରୁ ସେମାନଙ୍କର ଏଇ ସୌଭାଗ୍ୟ ଦେଖି ଖୁସିହୋଇ କହିଲେ—"ଭଲ ହେଲା, ଜୀବନସାରା ସେ ଦୁହେଁ କେତେ କଷ୍ଟ ଭୋଗିଥିଲେ, ଏବେ ଭଲା ବୁଢ଼ା ବୟସରେ ଟିକେ ସୁଖ ଆଉ ଆରାମରେ ରହନ୍ତୁ ।"

ଖୁସି ହେଲା ନାହିଁ କେବଳ ଜଣେ ଲୋକ । ସେ ହେଉଚି ସେଇ ଗାଁର ଜଣେ ଚାଷୀ, ତା'ର ନାଁ ତାନାକା । ତାନାକା ଯେପରି ଅଳସୁଆ, ସେହିପରି ଲୋଭୀ । ନିଜେ ଖଟିବାକୁ ଚାହେଁନାହିଁ ବୋଲି ତା'ର ରୋଜଗାର ନିହାତି କମ୍ । ଓଳିଏ ଖାଇଲେ ଓଳିଏ ଉପାସ । ଏଇ ବୁଢ଼ା ବୁଢ଼ୀଙ୍କ ଅବସ୍ଥା ବି କହିବାକୁ ଗଲେ ତା'ପରି ଥିଲା । ମାତ୍ର ସେମାନେ ହଠାତ୍ ଏତେ ଗୁଡ଼ାଏ ସମ୍ପତ୍ତିର ମାଲିକ ହୋଇଯାଇ ଆରାମରେ ଚଳୁଥିବାର ଦେଖି ତାନାକାର ମନଟା ଖାଲି ଘାଣ୍ଟିଚକଟି ହେଲା । ଭାବିଲା ସେ ବି ଯଦି କୌଣସି ପ୍ରକାରେ ଏପରି ଗୁପ୍ତଧନ ପାଇଯାଆନ୍ତା ତା'ହେଲେ ତା'ର ଆଉ ଦୁଃଖ ରହନ୍ତାନାହିଁ ।

ଏଇ କଥା ଭାବି ଭାବି ପରଦିନ ସକାଳେ ତାନାକା ଯାଇ ବୁଢ଼ାକୁ କହିଲା—"ଭାଇ, ଦିନକ ସକାଶେ ତୁମ କୁକୁରଟା ମତେ ଦବ କି ?" ସରଳବିଶ୍ୱାସୀ ବୁଢ଼ା ସଙ୍ଗେ ସଙ୍ଗେ ରାଜିହୋଇଗଲା । ସେଠୁ ତାନାକା କୁକୁରଟାକୁ ଧରି ବଣ ଭିତରେ ପଶିଲା । ବଣରେ ପଶି କୁକୁରଟା ଏଣେତେଣେ ଧାଁଧପଡ଼ କରିବାକୁ ଲାଗିଲା, ମାତ୍ର ମାଟି ଖୋଳିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ତାନକା ଥରକୁଥର ତାକୁ କହୁଥାଏ—ମାଟି ଖୋଳ, ମାଟି ଖୋଳ ମାତ୍ର ଫଳ କିଛି ହେଉନଥାଏ । ଶେଷକୁ ରାଗରେ ତାନାକା ଗଛରୁ ଗୋଟାଏ ଡାଳ ଭାଙ୍ଗିଆଣି କୁକୁରଟାକୁ ଖୁବ୍ ଜୋର୍‌ରେ ପିଟୁ ପିଟୁ କହିଲା—"ଶୀଘ୍ର ମାଟି ଖୋଳ, ନହେଲେ ଆଜି ମୁଁ ତତେ ଏଇଠି ମାରିଦେବି ।" କୁକୁରଟା ପ୍ରାଣବିକଳରେ କେତେ କରୁଣ ଚିତ୍କାର କଲା, ମାତ୍ର

ନିଷ୍ଠୁର ତାନାକା ମାଡ଼ ବନ୍ଦ କଲାନାହିଁ । ଶେଷରେ କୁକୁରଟା ଗୋଟାଏ ବୁଦା ପାଖରେ ଯାଇ ମାଟି ଘର୍ଷିବାକୁ ଲାଗିଲା । ଏହା ଦେଖି ତାନାକା ଧାଇଁଯାଇ ସେଇ ଜାଗାକୁ ଶାବଳରେ କିଛି ସମୟ ଖୋଳିବା ପରେ ମାଟିତଳୁ ଗୋଟାଏ ଲୁହାର ମାଠିଆ ବାହାରିଲା । ମାଠିଆଟା କାଢ଼ିବା ମାତ୍ରେ ସେଟାକୁ ମୁଣ୍ଡାଇ କୁକୁରଟାକୁ ଧରି ନିଜ ଘରକୁ ଫେରିଆସିଲା ।

ଘରୁ ବାହାରିଲାବେଳେ ତାନାକା ତା'ର ସ୍ତ୍ରୀକୁ କହିଯାଇଥିଲା ଯେ ସେ ଗୁପ୍ତଧନ ନେଇ ଘରକୁ ଫେରିବ । ତେଣୁ ସଞ୍ଜବେଳକୁ ଲୁହା ମାଠିଆଟା ନେଇ ଘରକୁ ଫେରିବା ମାତ୍ରେ ତା'ର ସ୍ତ୍ରୀ କ'ଣ ମିଳିଛି । ଦେଖେ ବୋଲି କହି ମାଠିଆଟା ଧରିବାରୁ ତାନାକା ଚିତ୍କାରିଉଠି କହିଲା—"ଦିନସାରା ଝାଳନାଳ ହୋଇ ମୁଁ ଏତକ ଉଦ୍ଧାର କରି ଆଣିଛି, ତୁ କାହିଁକି ଏଥିରେ ହାତ ମାରୁଛୁ ? ଏଥିରେ ଯାହା ଅଛି ସେ ସବୁତକ ମୋର ।"

ଏ କଥା ଶୁଣି ତା'ର ସ୍ତ୍ରୀ ରଗରେ ତାତିଯାଇ କହିଲା—"ତୁମେ ଗୋଟାଏ ନିପଟ ଅଳସୁଆ । ତୁମ ଅଳସପଣ ଯୋଗୁଁ ମୁଁ ଦିନେ ହେଲେ ପେଟପୂରି ଖାଇବାକୁ କି ଖଣ୍ଡେ ଭଲ ଲୁଗା ପିନ୍ଧିବାକୁ ପାଇନି । ଏଇ ଗୁପ୍ତଧନରୁ ଅଧେ ମୋର । ମୋ ଭାଗ ମୁଁ ଜବରଦସ୍ତ ନେବି ।" ଏହା କହି ପ୍ରାଣପଣ ଶକ୍ତିରେ ମାଠିଆଟାକୁ ଟାଣିବାକୁ ଲାଗିଲା । ତାନାକା ବି ନଛୋଡ଼େ । ସେ ଭାରି ଲୋଭୀ । ନିଜ ସ୍ତ୍ରୀକୁ ସୁଦ୍ଧା ଗୁପ୍ତଧନର ଭାଗ ଦେବାଲାଗି ତା'ର ମନ ହେଉନାହିଁ । ତେଣୁ ଦୁହିଁଙ୍କ ଭିତରେ ମାଠିଆଟା ନେଇ ଖୁବ୍ ଭିଡ଼ାଓଟରା ଚାଲିଲା । ଏହିପରି କିଛି ସମୟ ଭିଡ଼ାଓଟରା ଚାଲୁଚାଲୁ ଦୁହିଁଙ୍କ ହାତରୁ ମାଠିଆଟା ଖସିପଡ଼ିଲା ଏବଂ ସଙ୍ଗେ ସଙ୍ଗେ ତା' ଭିତରୁ ଆଲକାତରା ପରି ଗୁଡ଼ାଏ ପାଣିଆ ଦୁର୍ଗନ୍ଧ ଜିନିଷ ବାହାରି ଘରସାରା ଅସନା କରିଦେଲା । ଏହା ଦେଖି ତାନାକାର ସ୍ତ୍ରୀ ରଗ ଆଉ ହତାଶାରେ ତାନାକାକୁ ଖୁବ୍ କଡ଼ା କଥାରେ ଗାଳିଦେବାକୁ ଲାଗିଲା । ତାନାକା ମଧ୍ୟ ସେଇ ଅପମାନ ସହି ନପାରି "ତୁ ସବୁ ନଷ୍ଟର ମୂଳ, ତୋ ମଜା ମୁଁ ଛଡ଼ାଇଦେବି" କହି ହାତରେ ଧରିଥିବା ଶାବଳରେ କୁକୁର ମୁଣ୍ଡକୁ ଏପରି ଏକ ପାହାର ଦେଲା ଯେ ସେ ବିଚରା ସେଇଠି ପଡ଼ି ସଙ୍ଗେ ସଙ୍ଗେ ମରିଗଲା । ତା'ପରେ ତାନାକା କୁକୁରର ମୁର୍ଦ୍ଦାରଟାକୁ ଟେକିଆଣି ବୁଢ଼ା ଘରେ ଫିଙ୍ଗିଦେଇ କହିଲା—"ଆରେ ବୁଢ଼ା; ଏଇ ନେ ତୋର କୁକୁର ।"

ଚାନାକାର ଡାକ ଶୁଣି ପଦାକୁ ବାହାରିଆସି ବୁଢ଼ା ଦେଖିଲା ଯେ ତା'ର କୁକୁରଟା ମରି ପଡ଼ିଛି । ଏହା ଦେଖି ବୁଢ଼ା ଆଉ ବୁଢ଼ୀ ଦୁହେଁ ମନ କଷ୍ଟରେ ବହୁତ ବେଳଯାଏ କାନ୍ଦିଲେ । ମାତ୍ର ଯାହା ହବାର ତାହା ତ ହୋଇଗଲାଣି—ଆଉ କାନ୍ଦି ଅବା ଲାଭ କ'ଣ ? ତେଣୁ ପରଦିନ ସକାଳୁ ଉଠି ବୁଢ଼ା ଆଉ ବୁଢ଼ୀ ଦୁହେଁ ନିଜର ପୋଷା କୁକୁରଟିର ଶବ ସେମାନଙ୍କ ବାଡ଼ି ପଟେ ଗୋଟାଏ ଗହୀରିଆ ଗାତ ଖୋଳି ପୋତିଦେଲେ ଏବଂ ତା'ର ଦୁଇପଟେ ଇଟାଦେଇ ଗୋଟାଏ ସାନ ପାଚେରି କରିଦେଲେ ।

ଏହା ପରେ କିଛି ଦିନ ବିତିଗଲା । କୁକୁରଟି ମରିଯିବା ଦିନୁ ଏତେ ଧନ ସମ୍ପଦ ଥାଇ ସୁଦ୍ଧା ବୁଢ଼ା ବୁଢ଼ୀଙ୍କ ମନରେ ଆଉ ପୂର୍ବର ସୁଖ ନଥାଏ । ଯେତେବେଳେ ଯେଉଁଠି ବସିଲେ ସେଇ କୁକୁରଟି କଥା ସେମାନଙ୍କର ମନେ ପଡ଼ିଯାଏ, ଆଉ ତା' କଥା କହୁ କହୁ ଦୁହେଁ ଦୁଃଖରେ କାନ୍ଦିପକାନ୍ତି ।

ଏଣେ ବୁଢ଼ା ଓ ବୁଢ଼ୀ ଯେଉଁଠି ନିଜ କୁକୁରଟାକୁ ପୋତିଥିଲେ, କିଛିଦିନ ପରେ ସେଇ କବର ଉପରେ ଗୋଟାଏ ଗଛ ଉଠିଲା । ଦିହୁଁ ଦିହୁଁ ଗଛଟା ଏଡ଼େ ମୋଟ ଓ ଏଡ଼େ ବଡ଼ ହୋଇଗଲା ଯେ ତା'ର ଡାଳ ପତ୍ର ଯୋଗୁଁ ଦିନ ଦିପହରରେ ସୁଦ୍ଧା ବୁଢ଼ାର ଘର ଭିତରଟା ଅନ୍ଧାରୁଆ ଦିଶିଲା । ସେମାନଙ୍କ ବାଡ଼ିରେ ଥିବା ନାନା ଜାତିର ଫୁଲଗଛଗୁଡ଼ାକ ବି ସେଇ ବଡ଼ ଗଛର ଛାଇ ଯୋଗେ ଖରା ବର୍ଷା ନପାଇ ଶୁଖିଯିବାକୁ ଲାଗିଲା । ତେଣୁ ବୁଢ଼ା ବାଧ୍ୟ ହୋଇ ଲୋକ ଲଗାଇ ସେଇ ଗଛଟା କାଟିପକାଇଲା ଏବଂ ତା'ର ମୋଟ ଗଣ୍ଡିରୁ ବୁଢ଼ୀ କହିବା ମୁତାବକ ଗୋଟାଏ ଚକି ତିଆରିକରାଇଲା । ଚକି ତିଆରି ହୋଇ ଆସିବାରୁ ବୁଢ଼ୀ ସେଥିରେ ଗହମ ପେଷିବା ଆରମ୍ଭ କଲା । ଚକି ପେଷିବାକୁ ଯାଇ ବୁଢ଼ୀ ଦେଖିଲା ଯେ ସେଇ ଚକିର ଗୁଣ ଏଡ଼େ ଅଦ୍ଭୁତ ଯେ ସେଥିରେ ମୁଠାଏବୋଲି ଗହମ ପକାଇଦେଲେ ତା' ଭିତରୁ ମହଣ ମହଣ ଅଟା ପେଷା ହୋଇ ବାହାରି ଆସୁଛି—ଆଉ ଗହମ ପୂରାଇବା ଦରକାର ହେଉନାହିଁ । ଚକିଟି ବୁଲଉଥିବାଯାଏଁ ତା' ଭିତରୁ ମନକୁମନ ଅଟା ବାହାରୁଛି । ରାତିରେ ସେଟିକୁ ଥୋଇଦେଇ ପୁଣି ପରଦିନ ମୁଠାଏ ଗହମ ପକାଇଦେଲେ ଦିନସାରା ତା' ଭିତରୁ ଅଟା ବାହାରୁଥାଏ । ଚକିର ଏପରି ଆଶ୍ଚର୍ଯ୍ୟ ଗୁଣ ଦେଖି ବୁଢ଼ା ବୁଢ଼ୀ ଦୁହେଁ ବିସ୍ମିତ ହୋଇଗଲେ ଏବଂ ସେଥିରୁ

ବାହାରୁଥିବା ଅଝାକୁ ବଜାରରେ ବିକି ବହୁତ ଟଙ୍କା ରୋଜଗାର କରିବାକୁ ଲାଗିଲେ ।

କୌଣସି କଥା ଲୁଚି ରହେ ନାହିଁ । ଏଇ ଚକି କଥାଟା ବି ପାଞ୍ଚ କାନ ହେଉ ହେଉ ତାନାକା କାନରେ ଯାଇ ପଡ଼ିଲା । ଚକିଟା ଯୋଗୁଁ ବୁଢ଼ା ବୁଢ଼ୀ ଅକ୍ଳେଶରେ ଏତେ ଟଙ୍କା ଉପାର୍ଜନ କରୁଛନ୍ତି ଜାଣି ତାନାକାର ମନ ଲୋଭ ଆଉ ଈର୍ଷାରେ ପୂରିଗଲା । ଯେ କୌଣସି ପ୍ରକାରେ କିଛିଦିନ ଲାଗି ସେଇ ଚକିଟା ଆଣିବା ଲାଗି ସେ ମନରେ ସ୍ଥିର କଲା । ତା'ପରେ ଦିନେ ବୁଢ଼ା ପାଖକୁ ଯାଇ ସେ ଖୁବ୍ ମିଠା ସ୍ୱରରେ କହିଲା—"ମଉସା, ମୋର ଚକିଟା ଭାଙ୍ଗିଯାଇଛି । ଗହମ ପେଷିବା ଲାଗି ମୁଁ ବଡ଼ ହଇରାଣ ହଉଛି । ଦୁଇ ତିନି ଦିନ ଲାଗି ତୁମ ଚକିଟା ଯଦି ମତେ ଦିଅନ୍ତ, ତାହାହେଲେ ମୁଁ କିଛି ଗହମ ପେଷି ଅଟା କରି ରଖନ୍ତି ।"

ବୁଢ଼ାଟି ବଡ଼ ସରଳଲୋକ । କିଛିଦିନ ତଳେ ତାନାକା ଯେ ତାର କୁକୁରଟାକୁ ଏହିପରି ମାଗିନେଇ ପ୍ରାଣରେ ମାରିଦେଇଥିଲା, ସେ କଥା ବୁଢ଼ାର ଆଉ ମନେନଥିଲା । ତେଣୁ ବିନା ଦ୍ୱିଧାରେ ସେ କହିଲା—"ଇଏ ଗୋଟାଏ ବଡ଼ କଥା କ'ଣ ? ନେଇ ଯାଅ ଚକିଟା । ତୁମ କାମ ସରିଗଲେ ମତେ ଆଣି ଦେଇଯିବ ।"

ମନ ଆନନ୍ଦରେ ଚକିଟାକୁ ନିଜ ଘରକୁ ନେଇଯାଇ ତାନାକା ବସ୍ତାଏ ଗହମ କିଣି ଆଣି ପେଷିବାକୁ ଆରମ୍ଭ କଲା । ମାତ୍ର ହାୟ ! ଇଏ କ'ଣ ? ଅଟା ବାହାରିବା ତ ଦୂରର କଥା, ତାନାକା ଯେତେ ଗହମ ସେଇ ଚକି ଭିତରେ ଢାଳୁଥାଏ, କମିଆ କଲା ପରି ସେ ସବୁତକ ଭୁହୁଁ ଭୁହୁଁ କୁଆଡ଼େ ଉଭେଇଯାଉଥାଏ । ତାନାକା ବହୁତ ବେଳ ଯାଏଁ ନାନା ପ୍ରକାର ଚେଷ୍ଟା କଲା, ମାତ୍ର ଫଳ କିଛି ହେଲାନାହିଁ । ତାର ଏଇ ଦୁର୍ଦ୍ଦଶା ଦେଖି ତା' ସ୍ତ୍ରୀ ବି ତାକୁ ପରିହାସ କରିବାକୁ ଲାଗିଲା । ଶେଷକୁ ପ୍ରଚଣ୍ଡ ରାଗରେ ତାନାକା ଚକିଟାକୁ ନିଆଁ ଲଗାଇ ପୋଡ଼ିପକାଇଲା ଏବଂ ପାଉଁଶତକ ଗୋଟାଏ ଛିଣ୍ଡା କନାରେ ବାନ୍ଧି ସେଇ ପୁଟୁଳିଟା ବୁଢ଼ା ଘର ଭିତରେ ଫିଙ୍ଗି ଦେଇ କହିଲା—"ନେରେ ବୁଢ଼ା, ତୋର ଚକିଟା ନେ ।"

ପାଉଁଶ ପୁଟୁଳିଟା ଦେଖି ବୁଢ଼ାର ମନ ବଡ଼ ଦୁଃଖ ହେଲା । ମାତ୍ର ସେତେବେଳକୁ ଆଉ କିଛି କରିବାର ଉପାୟ ନାହିଁ । ପାଉଁଶତକ ନେଇ ସେ

ଅବା କଅଣ କରିବ ? ତେଣୁ ପୁଟୁଳିଟା ଖୋଲି ସେ ନିଜ ବାଡ଼ ପଟେ ପାଉଁଶ ତକ ଫୋପାଡ଼ିଦେଲା । ପାଉଁଶତକ ଘାସଗଛ ଗୁଡ଼ାକ ଉପରେ ବିଞ୍ଚିହୋଇ-ପଡ଼ିଲା । ପରଦିନ ସକାଳୁ ଉଠି ବୁଢ଼ା ଦେଖିଲା ଯେଉଁ ଘାସଗଛ ଗୁଡ଼ାକ ଉପରେ ପାଉଁଶତକ ବିଞ୍ଚିହୋଇ ପଡ଼ିଥିଲା, ରାତିକ ଭିତରେ ସେଗୁଡ଼ାକ ଫୁଲ ଗଛ ହୋଇଯାଇ ସେଥିରେ ନାଲି, ନୀଳ, ହଳଦିଆ, ଧଳା, ବାଇଗଣୀ ନାନା ରଙ୍ଗର ନାନା ଜାତିର ଫୁଲରେ ପୂରିଯାଇଛି । ଏଇ ଆଶ୍ଚର୍ଯ୍ୟ ଘଟଣା ଦେଖି ବୁଢ଼ା ଏକାବେଳକେ କାବା ହୋଇଗଲା ।

ସେ ଦେଶର ରଜାଝିଅଙ୍କର ଫୁଲରେ ବଡ଼ ସଉକ । ନିତି ସକାଳେ ତାଙ୍କ ପାଇଁ ବସ୍ତା ବସ୍ତା ଫୁଲ କିଣାହୋଇ ରାଜପ୍ରାସାଦକୁ ଯାଏ । ବୁଢ଼ାର ବଗିଚାରେ ଯେପରି ଫୁଲ ଫୁଟିଥିଲା ସେପରି ସୁନ୍ଦର ସୁଗନ୍ଧ ଫୁଲ ସେ ଅଞ୍ଚଳରେ ଆଉ କାହାରି ବଗିଚାରେ ନଥିଲା । ସେଇ ଫୁଲର ସନ୍ଧାନ ପାଇ ରାଜାଘରଲୋକେ ବହୁତ ଟଙ୍କା ଦେଇ ସବୁତକ ଫୁଲ ରଜାଝିଅଙ୍କ ପାଇଁ କିଣିନେଇଗଲେ । ରଜାଝିଅ ବି ସେଇ ଫୁଲ ଦେଖି ଏକାବେଳକେ ମୁଗ୍ଧ ହୋଇଗଲା । କହିଲା, "ଏଣିକି ପ୍ରତିଦିନ ମୋ ପାଇଁ ଏଇପରି ଫୁଲ ଆଣିଦେବ ।" ପରଦିନ ସକାଳୁ ରଜାଙ୍କ ଲୋକମାନେ ପୁଣି ବୁଢ଼ା ଦୁଆରେ ପହଞ୍ଚି ଫୁଲ କିଣିବାକୁ ଚାହିଁଲେ । ବଗିଚାକୁ ଯାଇ ବୁଢ଼ା ଦେଖିଲା ଯେ ରାତିକ ଭିତରେ ସବୁ ଗଛ ପୁଣି ଫୁଲରେ ପୂରିଯାଇଚି । ସେ ସବୁତକ ଫୁଲ ତୋଳି ଆଣି ରଜାଙ୍କ ଲୋକଙ୍କୁ ଦେବାରୁ ସେମାନେ ତାକୁ ବହୁତ ଟଙ୍କା ଦେଲେ ଏବଂ ପ୍ରତିଦିନ ସେମାନଙ୍କୁ ସବୁତକ ଫୁଲ ଯୋଗାଇବା ପାଇଁ ବରାଦ କରିଗଲେ । ଏହିପରି ଫୁଲ ବିକି ଖୁବ୍ ଅଳ୍ପଦିନ ଭିତରେ ଏଇ ଫୁଲ ବିକା ପଇସାରେ ବୁଢ଼ା ଖୁବ୍ ବଡ଼ଲୋକ ହୋଇଗଲା ।

ଏଇ ଫୁଲ ଯୋଗୁଁ ବୁଢ଼ାର ନାଁ ଚାରିଆଡ଼େ ବ୍ୟାପିଗଲା । ତା ବଗିଚାର ଫୁଲ ଦେଖି ଖୁସିହୋଇ ସ୍ୱୟଂ ରଜା ବୁଢ଼ାକୁ ଡକାଇପଠାଇଲେ । ସେ ରାଜଦରବାରରେ ପହଞ୍ଚିବାମାତ୍ରେ ରଜା ତାକୁ ବହୁତ ଆଦର କରି ବସିବା ଲାଗି ଭଲ ଆସନ ଦେଲେ, ତାକୁ ଭିତରକୁ ଡାକି ନେଇ ନାନା ପ୍ରକାର ମିଠା ଖୁଆଇଲେ ଏବଂ କପରି ତା ବଗିଚାରେ ଏଡ଼େ ସୁନ୍ଦର ଫୁଲ ଫୁଟୁଚି ସେ କଥା ଜାଣିବାକୁ ଚାହିଁଲେ । ତହୁଁ ବୁଢ଼ା ରଜାଙ୍କ ଆଗରେ ଗୋଟି ଗୋଟି କରି ସବୁ କଥା କହିଲା । ବୁଢ଼ା ଫେରିଗଲାବେଳେ ଖୁସି ହୋଇ ରଜା ତାକୁ

ନାନା ପ୍ରକାର ଦାମିକା ଜିନଷ ଉପହାରଦେଲେ । ଏଇ ଘଟଣା ପରେ ବୁଢ଼ା ଗାଁର ସବୁଠୁ ମୁଖିଆ ଲୋକ ହୋଇଗଲା । ସମସ୍ତଙ୍କ ମୁହଁରେ ତା ପ୍ରଶଂସା ଶୁଣାଗଲା ।

ଏ ସବୁ କଥା ଶୁଣି ତାନାକାର ମନ ପୁଣି ଉଦ୍ଧଳ ବିକଳ ହେଲା । ପୁଣି ବୁଢ଼ା ପାଖକୁ ଯାଇ ତା' ଗୋଡ଼ତଳେ ପଡ଼ି ସେ କହିଲା—"ମଉସା, ମୁଁ ଯାହା ଦୋଷ କରିଚି ମତେ ମାଫ୍‌କରିଦିଅ । ଦୟାକରି ମୋର ଗୋଟାଏ ଉପକାର କର । ତୁମ ଘରୁ ମୁଠାଏ ପାଉଁଶ ମତେ ଦିଅ, ମୋ ବଗିଚାରେ ମୁଁ ବିଞ୍ଚିବି ।" ବୁଢ଼ାତ ବଡ଼ ଦୟାଳୁ, ତା' କଥା ଶୁଣି ସେଇ ଗଛ କାଠରୁ ଖଣ୍ଡେ ପୋଡ଼ି ମୁଠାଏ ପାଉଁଶ ଆଣି ବୁଢ଼ା ତାନାକା ହାତରେ ଧରାଇଦେଲା । ପାଉଁଶ ମୁଠାକ ଧରି ତାନାକା ଧଇଁସଇଁ ହୋଇ ନିଜ ଘରକୁ ଧାଇଁଲା । ଘରେ ପହଞ୍ଚି ସେ ଆଗ ନିଜ ବାଡ଼ପଟକୁ ଯାଇ ପାଉଁଶତକ ଗଛରିଆଡ଼େ ବିଞ୍ଚିଦେଲା । ଦୁର୍ଭାଗ୍ୟକୁ ଠିକ୍ ଏତିକି ବେଳକୁ ଜୋର୍‌ରେ ପବନ ବହିବାକୁ ଲାଗିଲା । ଫଳରେ ପାଉଁଶତକ ତଳେ ନପଡ଼ି ସେଇ ପବନରେ ବହୁ ଦୂରକୁ ଉଡ଼ିଗଲା । ସେତିକିବେଳେ ରଜାଝିଅ ଦୋମହଲା ଘରର ଉପରେ ନିଜ ସଖୀମାନଙ୍କ ସାଙ୍ଗରେ ବସି ବୁଢ଼ାର ବଗିଚାରୁ ଅଣାଯାଇଥିବା ଫୁଲ ନେଇ ନାନା ପ୍ରକାର ମାଳ ଗନ୍ଥୁଥିଲେ । ଏହି ସମୟରେ ପବନରେ ଉଡ଼ି ଆସି ସେଇ ପାଉଁଶ ତାଙ୍କ ଆଖିରେ ପଡ଼ିଲା ଓ ଆଖି ଖୁବ୍ ଜଳା ପୋଡ଼ା ହେବାକୁ ଲାଗିଲା । ରଜାଝିଅ ବିକଳରେ କାନ୍ଦିପକାଇଲେ । ତାଙ୍କ କାନ୍ଦ ଶୁଣି ସମସ୍ତେ ଧାଇଁଆସି ଦେଖିଲେ ଯେ ପାଉଁଶ ପଡ଼ି ତାଙ୍କ ଆଖି ନାଲି ଦିଶୁଚି । ସଙ୍ଗେ ସଙ୍ଗେ ପାଣି ଆଣି ତାଙ୍କ ଆଖି ଧୂଆଗଲା । ତା' ପରେ ଖୋଜାହେଲା—ଏଇ ପାଉଁଶ କିଏ ଫୋପାଡ଼ିଥିଲା । ଖୋଜୁ ଖୋଜୁ ଶେଷକୁ ଜଣାପଡ଼ିଲା ଯେ ଏ'ଟା ତାନାକାର କାମ । ଆଗରୁ ତ ତାନାକାର ଦୁଷ୍ଟବୁଦ୍ଧି କଥା ଶୁଣି ରଜା ତା' ଉପରେ ଖୁବ୍ ରାଗିଯାଇଥିଲେ—ଏଇ କଥାରେ ତା' ନାଁ ଶୁଣିବାମାତ୍ରେ ସେ ଆଦେଶ ଦେଲେ—"ଶୀଘ୍ର ଏଇ ଦୁଷ୍ଟକୁ ଲଣ୍ଡା କର, ତା' ମୁହଁରେ ଚୂନ କଳା ବୋଳି ତାକୁ ମୋ ରାଜ୍ୟରୁ ବାହାର କରିଦିଅ, ଆଉ ତା'ର ଘର ଦ୍ୱାର ସବୁ ବୁଢ଼ାକୁ ଦେଇଦିଅ ।" ସେହିଦିନଠାରୁ ଆଉ କେହି କେବେ ତାନାକାକୁ ଦେଖିବାକୁ ପାଇଲେ ନାହିଁ ।

# ଗୋବରଗାଡ଼ୁଆର କଣ୍ଢେଇ

ଗରିବ ଘରେ ଏପରି ରୂପ କ୍ୱଚିତ୍ ଦେଖାଯାଇଥାଏ । ବାପ ଜମି ଚଷେ, ମା' ମୂଲ ଲାଗେ । ତାଙ୍କର ଗୋଟିଏ ବୋଲି ଝିଅ—ନାଁ ତା'ର ଚୁନ୍ଦା । ତା'ର ରୂପଟା ବି ଚୁନ୍ଦାଠାରୁ କେଉଁ ଅଂଶରେ ଊଣା ନୁହେଁ । ପୂର୍ଣ୍ଣିମା ଜହ୍ନ ପରି ଦେହର ବର୍ଣ୍ଣ, ପଦ୍ମଫୁଲ ପରି ମୁହଁ, ଡାଳିମ୍ବ ମଞ୍ଜି ପରି ଦାନ୍ତ, ଆଉ ପୋହଳା ପରି ଓଠ ଦିଓଟି । ଯାଉଥିବା ଲୋକ ବି ଚୁନ୍ଦାକୁ ଚାହିଁଦେଲେ ଦଣ୍ଡେ ଅଟକି ରହିଯିବ । ଏଡ଼େ ସୁନ୍ଦର ରୂପ ଥିଲେ କ'ଣ ହବ, ତା'ର ବେଶଭୂଷା ଦେଖିଲେ ବଡ଼ ଦୁଃଖଲାଗେ । ବାପ ମା' ତ ନିତାନ୍ତ ଗରିବ, ଝିଅକୁ ପେଟପୂରା ଭାତ ଯୋଗାଇ ପାରନ୍ତିନାହିଁ; ସେମାନେ ଚୁନ୍ଦାକୁ ତା' ଦେହେବା ଲାଗି ଗହଣା ବା ଲୁଗାପଟା ଆଣିଦେବେ କେଉଁଠୁ ? ଚିରା କୋତରା ପୋଷାକ ପିନ୍ଧି ଚୁନ୍ଦା ଚାଷ କାମରେ ତା' ବାପାକୁ ସାହାଯ୍ୟ କରେ ।

ଗାଁଲୋକେ ଚୁନ୍ଦାକୁ ଦେଖି ଆଶ୍ଚର୍ଯ୍ୟ ହୁଅନ୍ତି । କହନ୍ତି, "ଏ କେବେ ଏମାନଙ୍କର ପିଲା ନୁହେଁ । ଚଷା ଘରେ ରଜାଝିଅଠୁ ଅଧିକ ସୁନ୍ଦରୀ ଝିଅ ଜନ୍ମିବ କିପରି ? ସେମାନେ ନିଶ୍ଚେ କୌଣସି ବଡ଼ ଲୋକ ଘରୁ ତାକୁ ଚୋରାଇ ଆଣି ନିଜର ଝିଅ ବୋଲି ମିଛରେ କହୁଚନ୍ତି ।"

ଏ କଥା ଶୁଣି ଚୁନ୍ଦାର ବାପମାଙ୍କ ମନରେ ବଡ଼ କଷ୍ଟ ହେଲା । ତା' ଛଡ଼ା ଝିଅର ସୁନ୍ଦର ରୂପ ଦେଖି ହିଂସାରେ କାଳେ କେହି ଝିଅର କ୍ଷତି କରିବବୋଲି ତାଙ୍କ ମନରେ ମଧ୍ୟ ଭୟହେଲା । ତେଣୁ ବହୁତ ଭାବି ସେମାନେ ପତଳା କାଠରେ ଏପରି ଗୋଟାଏ ଟୋପି ତିଆରି କରି ଚୁନ୍ଦାକୁ ପିନ୍ଧେଇଦେଲେ ଯେ ତା' ମୁହଁର ଅଧେ ସେଥିରେ ଘୋଡ଼ାଇହୋଇଗଲା । ଏଣିକି କୌଣସି ଲୋକ ତାକୁ ଯେତେ ଦେଖିଲେ ସୁଦ୍ଧା ତା'ର ରୂପ କିପରି ସେ କଥା ଆଦୌ ବୁଝି ପାରିବନାହିଁ ।

ଟୋପିଟା ପିନ୍ଧାଇ ଦେଇ ବାପ ମା ଚୁନ୍ଦାକୁ ଡାକି କହିଲେ—"ଝିଅ, ଜାଣି ହୁସିଆର ! ଏଇ ଗାଁରେ ବହୁତ ଦୁଷ୍ଟଲୋକ ଅଛନ୍ତି । ତୁ ଟୋପିଟା କାଢ଼ିଦେଲେ ସେମାନେ ତତେ ଚୋରି କରି ନେଇଯାଇ ପ୍ରାଣରେ ମାରି-ପକାଇବେ । ନହେଲେ ରଜାଘରୁ ପିଆଦା ଆସି ତତେ ଧରି ନେଇ କଏଦ-

ଖାନାରେ ବନ୍ଦୀ କରି ରଖିବେ । ତେଣୁ ଘରକୁ ନ ଫେରିବାଯାଏ ଯେତେ ଅସୁବିଧା ଲାଗୁଥିଲେ ସୁଦ୍ଧା ଏଇ ଟୋପିଟା କଦାପି ମୁଣ୍ଡରୁ କାଢ଼ିବୁନାହିଁ ।"

ଗୃନ୍ଦ ବଡ଼ ସୁଧାରପିଲା । ବାପମାଙ୍କ କଥା ମାନି ଘରୁ ବାହାରିବା ସମୟରେ ସେ ସେଇ ମୁହିଁଡ଼ଙ୍କା ଟୋପିଟା ପିନ୍ଧି ବାହାରେ । ତା'ର ଏଇ ବିଚିତ୍ର ବେଶ ଦେଖି ବାହାରଲୋକେ କାବା ହୋଇ ଗୃହିଁରହନ୍ତି । ତାକୁ ଯିଏ ଯେତେ ଚିଡ଼ାଇଲେ ସୁଦ୍ଧା ସେ ବିଷୟରେ ଗୃନ୍ଦ ପଦେହେଲେ ଜବାବ ଦିଏ ନାହିଁ । ଏହା ଦେଖି ଗାଁର ଦୁଷ୍ଟ ପିଲାଏ ତାକୁ 'ଡାହାଣୀ' 'ପୋଡ଼ାମୁହିଁ' ବୋଲି ଚିଡ଼ାନ୍ତି ଓ ତା' ଆଡ଼କୁ ଟେକା ଫୋପାଡ଼ନ୍ତି । ବେଳେ ବେଳେ ଏସବୁ ଘଟଣାରେ ଗୃନ୍ଦ ବଡ଼ ରାଗିଯାଏ । ତା'ର ମନହୁଏ ଟୋପିଟା କାଢ଼ି ନିଜର ପ୍ରକୃତ ରୂପ ସମସ୍ତଙ୍କୁ ଦେଖାଇବାଲାଗି । ମାତ୍ର ପରକ୍ଷଣରେ ନିଜ ବାପମାଙ୍କ ନିଷେଧ ତା'ର ମନେପଡ଼ିଯାଏ—ଟୋପି ଫିଟାଇବା ଲାଗି ତା'ର ସାହସ ହୁଏ ନାହିଁ । ମନ ଦୁଃଖ ମନରେ ମାରି, ଆଖିରୁ ଦି'ଧାର ତାତଲା ଲୁହ ଗଡ଼ାଇ ସେ ପୁଣି ନିଜ କାମରେ ଲାଗିଯାଏ ।

ଦିନ ବର୍ଷ ବିତିଗଲା । ଗାଁ ଲୋକେ ତା'ର ସେଇ ମୁହିଁଡ଼ଙ୍କା କାଠଟୋପି ପିନ୍ଧା ଦେଖି ଦେଖି ଅଭ୍ୟସ୍ତ ହୋଇଗଲେଣି । ଗୃନ୍ଦର ପ୍ରକୃତ ରୂପଟା ଯେ କିପରି ସେ କଥା ବି କ୍ରମେ ଲୋକେ ପାଶୋରିଗଲେଣି । ଏତିକିବେଳେ ଗୃନ୍ଦ ଉପରେ ଗୋଟାଏ ବଡ଼ ଦୁର୍ଯୋଗ ପଡ଼ିଲା । ସାପ କାମୁଡ଼ାରେ ଦିନେ ତା'ର ବାପା ମରିଗଲା । ବାପା ମରିବାର ଦୁଇ ମାସ ପରେ ତା'ର ମା ବି କେଇଦିନ ଜ୍ୱରରେ ପଡ଼ି ଆଖିବୁଜିଦେଲା । ଏଣିକି ଏଡ଼େବଡ଼ ଦୁନିଆରେ ନିଜର ବୋଲି କହିବାକୁ ଗୃନ୍ଦର ଆଉ କେହିହେଲେ ରହିଲେନାହିଁ । ପିଲାଟି ଦିନୁ ବାପମାଙ୍କଠୁ ସେ ଶୁଣି ଆସିଚି ଯେ ଗାଁରେ ବହୁତ ଦୁଷ୍ଟ ଲୋକ ରହିଚନ୍ତି । ତେଣୁ ହଠାତ୍ ସେମାନଙ୍କ କଥା ଅମାନ୍ୟ କରି ଟୋପିଟା ଫିଟାଇବା ଲାଗି ତା'ର ସାହସ ହେଲାନାହିଁ । ମାତ୍ର ଏପରି ଗୋଟାଏ ବିଚିତ୍ର ବେଶରେ ସେ କାହା ଘରକୁ ବା କାମ ଖୋଜିବା ପାଇଁ ଯିବ ? ତା'ର ସେଇ ବିଚିତ୍ର ଟୋପିଟା ଦେଖିଲେ ଲୋକେ ହୁଏତ ଚିଡ଼ନ୍ତି ନହେଲେ ସନ୍ଦେହକରନ୍ତି । ତେଣୁ ପେଟ ପୋଷିବାର ଆଉ କୌଣସି ଉପାୟ ନଦେଖି ସେ ବଣକୁ ଯାଇ କାଠ ଗୋଟାଇବାକୁଲାଗିଲା । ଦିନ ସାରା କାଠ ଗୋଟାଏ—ସଞ୍ଜବେଳେ କାଠବିଡ଼ା ମୁଣ୍ଡାଇ ଗାଁ । ହାଟରେ ବିକି ଯାହା ଦିପଇସା ପାଏ ସେଇଥିରେ ଦୁଃଖେ ସୁଖେ କୌଣସି ପ୍ରକାରେ ତା'ର ଦିନ ବିତିଯାଉଥାଏ ।

ଏଡକବେଳେ ପୁଣି ତା' ଉପରେ ଆଉ ଗୋଟାଏ ବିପଦ ଚଢ଼ିଲା । ହଠାତ୍ ବନେ ମାଡ଼ିଆସିଲା ପ୍ରଚଣ୍ଡ ଝଡ଼ ଆଉ ତା' ସାଙ୍ଗକୁ ପ୍ରବଳ ବର୍ଷା । ସେଇ ବର୍ଷା ଆଉ ତୋଫାନ ମାଡ଼ରେ ସେ ରହୁଥିବା କୁଡ଼ିଆଟି ଭାଙ୍ଗି ମାଟିରେ ମିଶିଗଲା । ଏଣିକ କେଉଁଠି ମୁଣ୍ଡ ଗୁଞ୍ଜିବ, ରାତି କଟାଇବ—ବୃଦ୍ଧ ବୁଝିପାରିଲା ନାହିଁ । ହତାଶ ହୋଇ ବଣ ପାଖରେ ଗୋଟାଏ ଗଛ ମୂଳରେ ବସି କାନ୍ଦିବାକୁ ଲାଗିଲା । ଏଡକବେଳେ ସେଇ ବାଟେ ଯାଉ ଯାଉ ଜଣେ ଚାଷୀ ଦେଖିଲା ମୁହଁଢ଼ଙ୍କା ଟୋପି ପିନ୍ଧି ଗୋଟିଏ ଝିଅ ଗଛମୂଳେ ବସି କାନ୍ଦୁଛି । ତା'ର କାନ୍ଦ ଦେଖି ଚାଷୀ ମନରେ ବଡ଼ ଦୟା ହେଲା । ବୃଦ୍ଧକୁ ଡାକନେଇ ସେ ତାକୁ ନିଜ ଘରେ ଆଶ୍ରୟ ଦେଲା । ଚାଷୀର ସ୍ତ୍ରୀ ବି ବୃଦ୍ଧକୁ ସ୍ନେହରେ ଖାଇବାକୁ ଦେଲା । ମାତ୍ର ଚାଷୀ ଓ ତା'ର ସ୍ତ୍ରୀ ଯେତେ କହିଲେ ସୁଦ୍ଧା ବୃଦ୍ଧ ନିଜ ମୁଣ୍ଡରୁ ସେଇ ଟୋପିଟି କାଢ଼ିଲା ନାହିଁ । କେବଳ କହିଲା—"ଏ'ଟିକୁ କାଢ଼ିବା ଲାଗି ମୋ ବାପାମା ମତେ ବରବର ମନାକରିଚନ୍ତି, ତେଣୁ ମୁଁ କାଢ଼ିପାରିବି ନାହିଁ ।" ଏ କଥା ଶୁଣି ଚାଷୀ ଓ ତା'ର ସ୍ତ୍ରୀ ତାକୁ ଆଉ ବଳାଇଲେ ନାହିଁ ।

ବୃଦ୍ଧ ସେମାନଙ୍କ ଘରେ ଥାଏ ଓ ସବୁ ପ୍ରକାର କାମରେ ସେମାନଙ୍କୁ ସାହାଯ୍ୟ କରେ । ତା'ର ଶାନ୍ତ ସ୍ୱଭାବ ଲାଗି ଚାଷୀ ଓ ତା'ର ସ୍ତ୍ରୀ ତାକୁ ବଡ଼ ସ୍ନେହ କରନ୍ତି । ବର୍ଷାଦିନ । ଚାଷୀ ସାଙ୍ଗରେ ମିଶି ବୃଦ୍ଧ ଧାନ ବିଲରୁ ବାଳୁଙ୍ଗା ବାଛୁଚି । ସେଦିନ ସେ ଦେଶର ରଜା ଲୋକବାକ ଧରି ଘୋଡ଼ାରେ ଚଢ଼ି ରାଜ୍ୟର ଅବସ୍ଥା ନିଜେ ଦେଖିବା ଲାଗି ବାହାରିଥାଆନ୍ତି । ଯାଉ ଯାଉ ହଠାତ୍ ତାଙ୍କର ନଜର ପଡ଼ିଗଲା ମୁହଁଢ଼ଙ୍କା ଟୋପି ପିନ୍ଧା ବୃଦ୍ଧ ଉପରେ । ଏପରି ଅଦ୍ଭୁତ ଟୋପି ପିନ୍ଧା ଲୋକ ସେ କେଉଁଠାରେ ଦେଖି ନଥିଲେ । ତେଣୁ ଘୋଡ଼ା ପିଠିରୁ ଓହ୍ଲାଇପଡ଼ି ସେ ବୃଦ୍ଧ ପାଖକୁ ଯାଇ ପଚାରିଲେ—"ଝିଅ, ତୁ ଏପରି ମୁହଁଢ଼ଙ୍କା ଟୋପିଟାଏ ପିନ୍ଧିଚୁ କାହିଁକି ?"

ରଜା ପିନ୍ଧିଥିବା ସୁନା ଜରିଲଗା ପୋଷାକ ଓ ମଣି ମୁକ୍ତାର ହାର ଦେଖି ବୃଦ୍ଧ ମନେ ମନେ ଡରିଗଲା । ତଥାପି ତାଙ୍କ ପ୍ରଶ୍ନର ଉତ୍ତରରେ କହିଲା—"ମୋର ବାପା ମା କହିଯାଇଚନ୍ତି ଯେ ଏଇ ଟୋପିଟା ନପିନ୍ଧିଲେ ରଜା-ଘରର ପିଆଦାମାନେ ମତେ ଧରିନେଇ କଏଦିଖାନାରେ ବନ୍ଦୀକରି ରଖିବେ ।" ତା'ର ଏ ସରଳ ଉତ୍ତର ଶୁଣି ରଜା ବୁଝିପାରିଲେ ଯେ ଏହା ପଛରେ କିଛି ରହସ୍ୟ ରହିଚି ଏବଂ ସେ କଥା ଝିଅଟି ଜାଣେ ନାହିଁ । ତେଣୁ ସେ ପ୍ରସଙ୍ଗରେ

ଆଉ କିଛି ନ ପଚାରି ସେ ତା'ର ବାପ ମା' ଘର ଦ୍ୱାର କଥା ସବୁ ପଚାରି ବୁଝିଲେ । ବୃଦ୍ଧର ସରଳ ମିଠା କଥା ଓ ତା'ର ଦୁର୍ଭାଗ୍ୟର କାହାଣୀ ଶୁଣି ରଜାଙ୍କ ହୃଦୟ ଦୟାରେ ତରଳିଗଲା । ସେ ବୃଦ୍ଧକୁ ନିଜ ସଙ୍ଗରେ ନେଇ ଯିବା ଲାଗି ଇଚ୍ଛା କଲେ । ତାଙ୍କର ସଦୟ ବ୍ୟବହାର ଦେଖି ବୃଦ୍ଧ ମଧ୍ୟ ତାଙ୍କ ସଙ୍ଗରେ ଯିବାକୁ ରାଜିହେଲା ।

ରାଜପ୍ରାସାଦରେ ପହଞ୍ଚି ସୁଦ୍ଧା ବୃଦ୍ଧ ସେଇ ମୁହଁଢ଼ଙ୍କା ଟୋପିଟି ପିନ୍ଧିଥାଏ । କେବଳ ରାତିରେ ଶୋଇବା ସମୟରେ ସେ'ଟିକୁ କାଢି ରଖେ, ପୁଣି ସକାଳ ହେବାମାତ୍ରେ ପିନ୍ଧିନିଏ । ତେଣୁ ରାଜପ୍ରାସାଦର କେହି ତା'ର ରୂପ ଦେଖି ପାରିଲେ ନାହିଁ ସତ, ମାତ୍ର ତା'ର ଭଲ ଗୁଣ ଓ ସ୍ୱଭାବ ଯୋଗୁଁ ସମସ୍ତେ ତାକୁ ଖୁବ୍ ସ୍ନେହକଲେ । ସେଦିନ ଯୁବରାଜଙ୍କ ଜନ୍ମଦିନ । ସେଥି ଯୋଗୁଁ ନଅରରେ ଖୁବ୍ ଧୂମ୍‌ଧାମ୍, ଭୋଜିଭାତ ଚାଲିଥାଏ । ଏହି ଉତ୍ସବରେ ଯୋଗଦେବାଲାଗି ଯୁବରାଜଙ୍କ ସାଙ୍ଗମାନେ ଆସିଥାଆନ୍ତି । ନଅର ଭିତରେ ବୁଲୁବୁଲୁ ସେମାନେ ବୃଦ୍ଧର ଅଦ୍ଭୁତ ଟୋପି ଦେଖି ବଡ଼ ଆଶ୍ଚର୍ଯ୍ୟ ହେଲେ । ସେ କାହିଁକି ଏପରି ଟୋପି ପିନ୍ଧିଛି ବୋଲି ଯୁବରାଜଙ୍କୁ ପଚାରିବାରୁ ସେ ତା'ର କୌଣସି ଉତ୍ତର ଦେଇପାରିଲେନାହିଁ । ତେଣୁ ସେମାନେ ବୃଦ୍ଧକୁ ପଚାରିବାରୁ ସେ ସେଇ ଏକା ଜବାବ ଦେଲା—"ବାପା ମା' କହିଯାଇଛନ୍ତି ଯେ ଏଇ ଟୋପି ନ ପିନ୍ଧିଲେ ରଜାଘର ପିଆଦାମାନେ ମତେ କଏଦଖାନାକୁ ନେଇଯିବେ ।

କିନ୍ତୁ ଯୁବରାଜଙ୍କ ସାଙ୍ଗମାନେ ତା'ର ଏଇ ସରଳ ଉତ୍ତରକୁ ବିଶ୍ୱାସ କଲେନାହିଁ । ସେମାନେ ଭାବିଲେ ନିଶ୍ଚେ ତା'ର ମୁହଁଟା ନିହାତି ଅସୁନ୍ଦର, ତେଣୁ ତା'ର ବାପା ମା' ତାକୁ ଏପରି ଅଦ୍ଭୁତ ଗୋଟାଏ ଟୋପି ପିନ୍ଧାଇ-ଦେଇଛନ୍ତି । ସେମାନଙ୍କ କଥା ଶୁଣି ରାଜପ୍ରାସାଦର ବହୁ ଲୋକ ଭାବିଲେ ଯେ ନିଶ୍ଚେ ତାହାହିଁ ହୋଇଥିବ । ମାତ୍ର ଯୁବରାଜ ଏ ସବୁ କଥାକୁ ଆଦୌ ବିଶ୍ୱାସ କଲେନାହିଁ ।

କ୍ରମେ ଯୁବରାଜଙ୍କ ସଙ୍ଗରେ ବୃଦ୍ଧର ବନ୍ଧୁତା ହୋଇଗଲା । ଦୁହେଁ ବହୁ ସମୟ ଏକାଠି ଗପନ୍ତି, ଖେଳନ୍ତି ଅଥବା ବଗିଚାରେ ଯାଇ ବୁଲନ୍ତି । ସେମାନଙ୍କର ପରସ୍ପର ପ୍ରତି ସ୍ନେହ ଦିନକୁ ଦିନ ବଢିବାକୁ ଲାଗିଲା । ଏପରି ସମୟରେ ଗୋଟାଏ ଦରକାରୀ ରାଜକାମରେ ଛ'ମାସ ଲାଗି ଯୁବରାଜଙ୍କୁ ବିଦେଶ ଯିବାକୁ ପଡ଼ିଲା । ଖୁବ୍ ଜରୁରୀ କାମ, ନଗଲେ ନଚଳେ—ମାତ୍ର ବୃଦ୍ଧକୁ ଛାଡ଼ି

ଯିବା ଲାଗି ଯୁବରାଜଙ୍କ ମନରେ ଅତ୍ୟନ୍ତ କଷ୍ଟହେଲା । ଯୁବରାଜ ଛ'ମାସ ଲାଗି ବିଦେଶ ଯିବେ ଶୁଣି ଗୃନ୍ଦର ମନ ମଧ୍ୟ ଦୁଃଖରେ ପୂରିଗଲା । ଯିବାଦିନ ଯୁବରାଜ ଗୃନ୍ଦକୁ ନିଜ ପାଖକୁ ଡାକି କହିଲେ—"ଗୃନ୍ଦ, ମୁଁ ବିଦେଶ ଯାଉଚି, ଛ'ମାସ ପରେ ଫେରିବି, ତୁମେ ମତେ ମନେରଖିବ ତ ?" ଗୃନ୍ଦ ଜବାବ ଦିବ କ'ଣ— ଲୁହରେ ତା'ର ତଣ୍ଟି ରୁନ୍ଧ ହୋଇଯାଇଥିଲା, ତେଣୁ ସେ ମୁଣ୍ଡ ଟୁଙ୍ଗାଇ 'ହଁ' ଭରିଲା ।

ଯୁବରାଜ ବିଦେଶ ଗଲେ । ସେଠାରେ ପହଞ୍ଚି ସୁଦ୍ଧା ଗୃନ୍ଦ କଥା ମୁହୂର୍ତ୍ତକ ଲାଗି ଭୁଲିପାରିଲେ ନାହିଁ । ସବୁ କାମ ଭିତରେ ଗୃନ୍ଦ କଥା ମନେ ପଡ଼ି ତାଙ୍କ ଚିତ୍ତ ଭିତରଟା ଘାଣ୍ଟି ଚକଟି ହୋଇଯାଏ । କେଉଁ କାମ ଲାଗି ସେ ବିଦେଶ ଆସିଚନ୍ତି, ସେ କଥା ବି ସେ ବେଳେ ବେଳେ ଭୁଲିଯାଆନ୍ତି । ଏଣେ ଗୃନ୍ଦ ଅବସ୍ଥା ବି ସେହିଭଳି । କୌଣସି କାମରେ ତା'ର ମନ ନାହିଁ—ସବୁବେଳେ ଗୋଟାଏ ଜାଗାରେ ଗୁମ୍ ହୋଇ ବସିରହେ । ଯିଏ ଯେତେ ପଚାରିଲେ ସୁଦ୍ଧା କିଛି ସ୍ପଷ୍ଟ ଜବାବ ଦିଏନାହିଁ । ଖାଲି ଭାବୁଥାଏ—କେବେ ଛ'ମାସ ପୂରିଯିବ, ଯୁବରାଜ ପୁଣି ଫେରିଆସିବେ ।

ଗୃହୁଁ ଗୃହୁଁ ଛ'ମାସ ବିତିଗଲା । ଯଥାସମୟରେ ଯୁବରାଜ ନିଜ ପ୍ରାସାଦକୁ ଫେରିଆସିଲେ । ସେ ଫେରିଆସିବାରୁ ରଜା, ରାଣୀ, ମନ୍ତ୍ରୀ ଓ ନଅରର ଲୋକବାକ ସମସ୍ତେ ଖୁସି, ମାତ୍ର ସବୁଠାରୁ ବେଶି ଖୁସି ହେଲା ଗୃନ୍ଦ । ଏହା ପରେ ଯୁବରାଜଙ୍କ ବିବାହ ପ୍ରସଙ୍ଗ ଉଠିଲା । ରଜା ଓ ରାଣୀ ଗୋଟିଏ ରାଜ- କନ୍ୟାକୁ ବୋହୂ କରିବାଲାଗି ସ୍ଥିରକଲେ । ଯୁବରାଜ ବାହା ହେବେ ବୋଲି ରାଜ୍ୟସାରା ଚହଲପଡ଼ିଗଲା । କେତେ ଆଡ଼୍ ଦଳ ଦଳ ହୋଇ ପ୍ରଜାମାନେ ରାଜଧାନୀରେ ଠୁଳହେଲେ । ଚାରିଆଡ଼େ ନାଚ, ଗୀତ, ଆନନ୍ଦ, ଉତ୍ସବ ଭୋଜି ଭାତର ଆୟୋଜନ । ରଜା, ରାଣୀ, ପ୍ରଜା ସାଧାରଣ ସମସ୍ତଙ୍କ ମନ ଆନନ୍ଦରେ ଭରପର; ମାତ୍ର ଯୁବରାଜଙ୍କ ମନରେ ଟିକିଏହେଲେ ସୁଖ ନାହିଁ, ଓଲଟା ବାହାଘର ସ୍ଥିର ହେବାଦିନରୁ ସେ ଖିଆପିଆ ଏକପ୍ରକାର ଛାଡ଼ି ସବୁବେଳେ ମୁହଁଟା ଶୁଖାଇ ଏକା ଏକା ବସି କ'ଣ ଭାବନ୍ତି, ଆଉ ରହି ରହି ଗୋଟାଏ ଲେଖାଁ ଦୀର୍ଘନିଃଶ୍ୱାସ ପକାନ୍ତି ।

ଏ ଘଟଣା ଦେଖି ରଜା ରାଣୀ ବଡ଼ ବ୍ୟସ୍ତହୋଇପଡ଼ିଲେ । ବାହାଘର ସ୍ଥିର ହୋଇସାରିଚି, ମାତ୍ର ଯୁବରାଜ ଖୁସି ହବା ପରିବର୍ତ୍ତେ ସେ ଏପରି ମୁହଁ ଶୁଖାଇ

ବୁଲୁଚ କାହିଁକ ? ଯୁବରାଜଙ୍କ ମନ କଥା ବୁଝିବା ଲାଗି ରାଣୀ ତାଙ୍କ ସାଙ୍ଗମାନଙ୍କୁ କହିଲେ । ସେମାନେ ଯୁବରାଜଙ୍କୁ ପଚାରି ଯାହା ବୁଝିଆସିଲେ ସେ କଥା ଶୁଣି ରଜା, ରାଣୀ ଓ ନଅରର ଆଉ ସମସ୍ତେ ଏକାବେଳକେ ତାଜୁବ୍ । ସେମାନେ କହିଲେ, ଯୁବରାଜ ସେଇ ମୁହଁଢ଼ଙ୍କା ଟୋପି ପିନ୍ଧା ଝିଅଟାକୁ ବାହା ହେବାକୁ ଚାହାନ୍ତି । କି ବିପଦ ! ନାମ ଗୋତ୍ର ନଥିବା ଅସୁନ୍ଦରୀ ଗୋଟାଏ ଝିଅ, ଧାନ ବିଲରେ କାମକରୁଥିଲା ବେଳେ ରଜା ତାକୁ ଦେଖି ଦୟାକରି ନିଜ ପାଖରେ ଆଶ୍ରୟ ଦେଇଚନ୍ତି, ତାକୁ ବାହାହେବେ ଯୁବରାଜ ! ଅସମ୍ଭବ । ଏ କଥା କଦାପି ହୋଇପାରିବନାହିଁ ।"

ବାପା ମାଙ୍କ ମତ ଶୁଣି ଯୁବରାଜ କହିଲେ—"ଠିକ୍ ଅଛି, ମୁଁ ଆଉ ବାହା ହେବି ନାହିଁ । ସାଙ୍ଗ ସାଥି, ପାତ୍ର ମିତ୍ର କେତେ ପ୍ରକାରେ ବୁଝେଇଲେ, ମାତ୍ର ତାଙ୍କର ସେଇ ଏକା ଜିଦ୍, ବୃନ୍ଦ ଛଡ଼ା ସେ ଆଉ କାହାକୁ ବାହାହେବ ନାହିଁ । ଲୋକେ କହିଲେ—"ସେ ଝିଅଟା ଆପଣଙ୍କ ନଅରରେ ପୋଇଲି ହୋଇ ରହିଚ । ତାକୁ ବାହାହେଲେ ଆପଣଙ୍କର ମାନମହତ ଚାଲିଯିବ ।"

ଯୁବରାଜ କହିଲେ—"ଯାଉ ।"

କିଏ ବା କହିଲା—"ସେ ଦେଖିବାକୁ ନିହାତି କୁତ୍ସିତ ।"

ଯୁବରାଜ କହିଲେ—"ହେଉ ।"

ମନ୍ତ୍ରୀ କହିଲେ—"ସେ ଏତେ ଗୋଟାଏ ମୁହଁଢ଼ଙ୍କା ଟୋପି ଯେ ପିନ୍ଧିଛି, ତା' ପଛରେ ନିଶ୍ଚେ କିଛି ଘୋର ରହସ୍ୟ ରହିଚ ।"

ଯୁବରାଜ ଜବାବ ଦେଲେ—"ଥାଉ ।"

ଶେଷକୁ ନଅର ଯାକ ସମସ୍ତେ ବୃନ୍ଦ ଉପରେ ରାଗି ତମ୍ତମ୍ ହେଲେ । ତାକୁ ଡାକି କହିଲେ—"ରଜା ତତେ ଦୟା ଦେଖାଇ ଭୁଲ୍କରିଚନ୍ତି । ତୁ ଗୋଟାଏ ଡାହାଣୀ; ଆମ ଯୁବରାଜଙ୍କର ସର୍ବନାଶ କରିବାଲାଗି ଆସିଚୁ ।" ଏ କଥା ଶୁଣି ବୃନ୍ଦ ମନକୁ ବଡ଼ ବାଧିଲା । ସେ ଲୋକମାନଙ୍କୁ କୌଣସି ଜବାବ ଦେଇନପାରି କେବଳ କାନ୍ଦିବାକୁ ଲାଗିଲା । ଆଉ ତା'ର କାନ୍ଦ ଦେଖି ଯୁବରାଜଙ୍କ ଆଖିରୁ ବି ଧାର ଧାର ଲୁହ ଝରିପଡ଼ିଲା ।

ପୁଅର ଜିଦ୍ ଦେଖି ଶେଷକୁ ରଜା କହିଲେ—"ଠିକ୍ ଅଛି, ତା'ର ଯେବେ ସେଇ ଝିଅଟାକୁ ବାହା ହେବା ପାଇଁ ଏତେ ମନ ହେଉଚି ତେବେ ସେ ତାକୁ ବାହାହେଉ । ପରେ ସେଥିଲାଗି ଯଦି ଅନୁତାପ କରେ, ତେବେ

ଆମ କାହାକୁ ସେ ଦୋଷ ଦେଇପାରିବନାହିଁ । ଆମେ ତାକୁ ସବୁ ପ୍ରକାରେ ବୁଝାଇଲୁ ଏଣିକି ସେ ତା' ଇଚ୍ଛା ମୁତାବକ କାମ କରୁ ।"

ରାଣୀ ବାଧାଦେଇ କହିଲେ—"ସେ କଥା କଦାପି ହୋଇପାରିବନାହିଁ । ମୋର ଗୋଟିଏ ବୋଲି ପୁଅ, ଆଉ ସେ କ'ଣ ନା ଗୋଟାଏ ଅଜଣା, ଅଚିହ୍ନା, କୁତ୍ସିତ ଝିଅକୁ ବାହାହେବ ! ଯଦି ସେ ଜବରଦସ୍ତି ତାକୁ ବାହା ହୁଏ ତେବେ ମୁଁ ନିଶ୍ଚେ ବିଷଖାଇ ମରିବି ।"

ବୃନ୍ଦ ସବୁକଥା ଶୁଣିଲା । ସେ ବୁଝିଲା ଯେ ତା'ରି ଯୋଗୁଁ ରାଜପରିବାର ଭିତରେ ମହା ଗଣ୍ଡଗୋଳ ଦେଖାଦେଇଛି । ତା' ଲାଗି ଯୁବରାଜ ବି ନିଜ ବାପ ମା ଓ ସାଙ୍ଗସାଥିଙ୍କଠାରୁ ବହୁତ ନିନ୍ଦା ଶୁଣୁଛନ୍ତି । ସେ ଯଦି ଆଉ ବେଶି ଦିନ ସେଠାରେ ରହେ ତେବେ ତା' ଲାଗି ରାଣୀମା ହୁଏତ ସତକୁସତ ଆତ୍ମହତ୍ୟା କରିବେ । ତା' ଛଡ଼ା ଯୁବରାଜ ତାକୁ ବାହାହେଲେ ତାଙ୍କ ଆତ୍ମୀୟସ୍ୱଜନ ସମସ୍ତଙ୍କ ମନ ଖୁବ୍ ଅସନ୍ତୁଷ୍ଟ ହବ । ପୁଣି ପ୍ରଜାମାନେ ବି ସେଇ ବାହାଘରକୁ ନାପସନ୍ଦ କରି ତାକୁ ଆଉ ଯୁବରାଜଙ୍କୁ ନିନ୍ଦା କରିବେ । ତା'ର ମନେପଡ଼ିଗଲା ବାପାମାଙ୍କ କଥା, କହିଥିଲେ—ଟୋପିଟା ଖୋଲିଲେ ପିଆଦା-ମାନେ ତାକୁ ଧରି କଏଦଖାନାକୁ ନେଇଯିବେ । ତେଣୁ ସେ ମନେ ମନେ କହିଲା –"ମୁଁ ଆଜ ମୋର ଟୋପିଟା କାଢ଼ିଦେବି—ତାହେଲେ ତ ପିଆଦା-ମାନେ ମତେ ଧରି ନେଇଯିବେ । ମୁଁ ଏଠୁ ଚାଲିଗଲେ ରଜାଙ୍କ ଘରେ ପୁଣି ଶାନ୍ତି ଫେରିଆସିବ, ଯୁବରାଜଙ୍କର ମଙ୍ଗଳ ହେବ ।

ଏହିପରି ବିଚାରି ସେ ହଠାତ୍ ସେଇ ମୁହଁଢଙ୍କା ଟୋପିଟା କାଢ଼ି ତଳେ କଚାଡ଼ି ଦୁଇଖଣ୍ଡ କରିଦେଲା । ସେ ଟୋପିଟା ଭାଙ୍ଗୁଛି ଦେଖି ରଜା, ରାଣୀ, ଯୁବରାଜ ଓ ତାଙ୍କ ସାଙ୍ଗମାନେ—"କ'ଣ ହେଲା, କ'ଣ ହେଲା" କହି ତା' ପାଖକୁ ଧାଇଁଆସିଲେ । ତା'ପରେ ତା' ମୁହଁ ଆଡ଼କୁ ଅନାଇଁ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ । ଏଡ଼େ ସୁନ୍ଦର ରୂପ ମଣିଷଟି ଦେଖାଯାଏନାହିଁ । ଏ କ'ଣ ମଣିଷ ଝିଅ ନା ଦେବକନ୍ୟା ? ବହୁତ ବେଳଯାଏଁ ସମସ୍ତେ ଏକ ଲୟରେ ତା' ଆଡ଼କୁ ଚାହିଁରହିଲେ । ତା'ପରେ ରାଣୀ ହଠାତ୍ ତାକୁ ନିଜ କୋଳକୁ ଟାଣିଆଣି ତା' କପାଳରେ ଚୁମାଦେଇ କହିଲେ—"ମହାରାଜ, ନିଜେ ଭଗବାନ ଏହାକୁ ଆମ ବୋହୂ କରି ବାଛିଛନ୍ତି । ଆପଣ ସବୁ ଆୟୋଜନ କରନ୍ତୁ, ମୁଁ କାଲି ଏହା ସଙ୍ଗରେ ଯୁବରାଜଙ୍କୁ ବାହାକରାଇବି ।"

# ଅଜଗର କାହାଣୀ

ବହୁଦିନ ପୂର୍ବେ ଚନ୍ଦ୍ର, ସୂର୍ଯ୍ୟ ଓ ସମୁଦ୍ର ଜଣେ ପରୀ କମାରେ ଥିଲେ । ମରିବା ପୂର୍ବରୁ ପରୀ ସେଗୁଡ଼ାକ ନିଜ ପିଲାଙ୍କ ଭିତରେ ବାଣ୍ଟିଦେଇଗଲେ । ଝିଅ ଆମା ପାଇଲା ସୂର୍ଯ୍ୟ, ବଡ଼ ପୁଅ ସୁସାନୋ ପାଇଲା ସମୁଦ୍ର ଓ ସାନ ପୁଅ ତୋଗୋ ପାଇଲା ଚନ୍ଦ୍ର ।

ସୂର୍ଯ୍ୟଲୋକରେ ପହଞ୍ଚି ଆମା ନିଜକୁ ସେ ଦେଶର ରାଣୀ ବୋଲି ଘୋଷଣା କଲା । ସେ ସମୟରେ ସୂର୍ଯ୍ୟର ତେଜ ଖୁବ୍ କମ୍ ଥିଲା । ସେଥିପାଇଁ ସୂର୍ଯ୍ୟ କିରଣ ଭଲଭାବରେ ପୃଥିବୀ ଉପରେ ପଡ଼ୁନଥିବା ଫଳରେ କୌଣସି ପ୍ରକାର ବୃକ୍ଷ ଜାତ ହୋଇପାରୁନଥିଲା । ମାତ୍ର ଆମା ସୂର୍ଯ୍ୟଲୋକର ରାଣୀ ହେବା ପରଠୁଁ ତାଙ୍କ ତେଜରେ ସୂର୍ଯ୍ୟର କିରଣ ଏପରି ବଢିଗଲା ଯେ ଲୋକେ ଖାଲି ଆଖିରେ ସୂର୍ଯ୍ୟକୁ ଚାହିଁପାରିଲେ ନାହିଁ ଏବଂ ସେଇ ପ୍ରଖର ତେଜ ଯୋଗେ ସାରା ପୃଥିବୀ ନାନା ଜାତିର ଗଛ ଲତାରେ ଭରିଗଲା ।

ସାନପୁଅ ତୋଗୋ ଚନ୍ଦ୍ରଲୋକରେ ପହଞ୍ଚି ସେ ଦେଶର ଗୋଟିଏ ଅତି ସୁନ୍ଦରୀ ଓ ଗୁଣବତୀ ଝିଅକୁ ବିବାହ ହୋଇ ରାଜପଣ କରିବାକୁ ଲାଗିଲେ । ପୂର୍ବେ ଚନ୍ଦ୍ରର କୌଣସି ଆଲୁଅ ନଥିଲା, ମାତ୍ର ତୋଗୋ ରାଜା ହେବା ପରେ ତାଙ୍କ ରାଣୀଙ୍କ ରୂପରେ ସାରା ଚନ୍ଦ୍ରଲୋକ ହସିଉଠିଲା ଏବଂ ତା' ଫଳରେ ଗୋଟାଏ ସ୍ନିଗ୍ଧ ଆଲୁଅ ବାହାରି ଆକାଶ ସାରା ବ୍ୟାପିଗଲା ।

ବଡ଼ପୁଅ ସୁସାନୋ ମନେ ମନେ ଖୁବ୍ ରାଗିଗଲେ । ତୋଗୋ ସୁନ୍ଦରୀ ଝିଅ ବାହାହୋଇ ଚନ୍ଦ୍ରଲୋକରେ ବସି ଅମୃତ ପିଉଛି ଏବଂ ପୃଥିବୀ ସାରା ଲୋକ ଜହ୍ନ ଆଲୁଅର ପ୍ରଶଂସା ଗାଉଛନ୍ତି । ଆମାଙ୍କ ଯୋଗେ ଲୋକେ ସୂର୍ଯ୍ୟକୁ ଦେବତା ପରି ମାନ୍ୟକରି ତା'ର ପୂଜା କରୁଛନ୍ତି । ଆଉ ସେ ? ସେ ପଡ଼ିରହିଛି ସମୁଦ୍ରର ଏଇ ଲୁଣି ପାଣିରେ ଏବଂ ତା' ଚାରିପଟେ ଖାଲି ମାଛ, ମଗର ଓ ତିମି । ଏପରି ଘୋର ଅବିଚାରର କ'ଣ କେହି ସହ୍ୟ କରିପାରେ ?

ଶେଷକୁ ଦିନେ ଆଉ ନିଜକୁ ସମ୍ଭାଳିନପାରି ସୁସାନୋ ଝଡ଼ ପରି ବେଗରେ ଚାଲିଲେ ସୂର୍ଯ୍ୟଲୋକକୁ । ସଖୀମାନଙ୍କୁ ସଙ୍ଗରେ ଧରି ଆମା ଚରଖାରେ ତୁଳାରୁ ସୁନେଲି ସୂତା କାଟୁଥିଲେ । ଏପରି ସମୟରେ ସୁସାନୋ ହଠାତ୍ ପ୍ରଳୟ

ମୂର୍ତ୍ତି ଧରି ସେଠାରେ ପହଞ୍ଚି ତାଙ୍କ ଚରିଖା ଭାଙ୍ଗି, ସୂତା ଛିଣ୍ଡାଇ ତୁଳା ଫୋପାଡ଼ି ସବୁ ନଷ୍ଟ କରିଦେଲେ । ହଠାତ୍ ସେଇ ଉପୁଙ୍କର ମୂର୍ତ୍ତି ଦେଖି ଆମା ଭୟରେ ଗ୍ଲାନିଆ ହୋଇ ନିଜର ପ୍ରାସାଦ ଛାଡ଼ି ବହୁ ଦୂରରେ ଥିବା ଗୋଟାଏ ପାହାଡ଼ର ଗୁହାରେ ଲୁଚିରହିଲେ ।

ଆମା ଲୁଚିଯିବା ମାତ୍ରେ ସୂର୍ଯ୍ୟର ଦୀପ୍ତି ଲିଭିଗଲା । ଚାରିଆଡ଼େ ଘୋର ଅନ୍ଧାର ଘୋଟିଗଲା । କେହି କିଛି ଦେଖିପାରିଲେ ନାହିଁ, କୌଣସି କାମ ହୋଇପାରିଲାନାହିଁ, ଗଛଲତା ସବୁ ଖରା ଅଭାବରୁ ଶୁଖି ଶୁଖି ମରିଗଲେ । ପୃଥିବୀ ସାରା ମଣିଷ ଓ ଜୀବଜନ୍ତୁ ହାହୁ ହାହୁ କରିବାକୁ ଲାଗିଲେ ।

ଏଇ ଘୋର ଅନ୍ଧାରରେ ବ୍ୟାକୁଳ ହୋଇ ପଣ୍ଡିମାନେ କହିଲେ— "ଆମାରାଣୀ ଆସି ସିଂହାସନରେ ନବସିବା ଯାଏଁ ରକ୍ଷା ନାହିଁ । ଏଇ ଅନ୍ଧାରରେ ଆମେ ବଞ୍ଚିପାରିବୁ ନାହିଁ, ସାରା ସୃଷ୍ଟି ବିଧ୍ୱଂସ ପାଇଯିବ ।" ତା'ପରେ ଯେଉଁ ଗୁହାରେ ଆମା ଲୁଚିଥିଲେ, ତାପାଖରେ ପହଞ୍ଚି ସେମାନେ ଡାକପକାଇଲେ—"ଆମାରାଣୀ ! ତୁମେ ଏଠି ରହିବାରୁ ଦୁନିଆ ସାରା ଅନ୍ଧକାର ଘୋଟିଯାଇଛି, ତୁମେ ଶୀଘ୍ର ନିଜ ସିଂହାସନରେ ବସି ଆମକୁ ରକ୍ଷା କର ।" ସେମାନେ ବାରମ୍ବାର ଏହିପରି ଡାକପକାଇଲେ ସୁଦ୍ଧା ଆମା ପଦାକୁ ବାହାରିଲେ ନାହିଁ କି ସେମାନଙ୍କୁ ଜବାବ ସୁଦ୍ଧା ଦେଲେନାହିଁ ।

ଏପରି ଅବସ୍ଥା ଦେଖି ପଣ୍ଡିମାନଙ୍କ ମଧ୍ୟରେ ଭାବନା ପଡ଼ିଗଲା—କ'ଣ କରାଯିବ ! ହଠାତ୍ ସେମାନଙ୍କର ମନେପଡ଼ିଗଲା ନାଚ ଗୀତକୁ ଆମା ବଡ଼ ସୁଖପାଆନ୍ତି । କେଉଁଠି ନାଚ ବା ଗୀତ ହେଉଥିବାର ଜାଣିଲେ ସେ ସଙ୍ଗେ ସଙ୍ଗେ ସେଠାରେ ପହଞ୍ଚିଯାଆନ୍ତି । ତେଣୁ ପଣ୍ଡିମାନେ ନିଜ ମଧ୍ୟରେ ପରାମର୍ଶ କରି ସେଇ ଗୁହା ଆଗରେ ନାଚିବାକୁ ଓ ଗୀତ ଗାଇବାକୁ ଲାଗିଲେ । ସେମାନଙ୍କର ନାଚ ଆଉ ଗୀତ ଯେ କେଡ଼େ ଚମତ୍କାର, ତାହା କଥାରେ କହିହେବନାହିଁ । ଗୁହା ଭିତରେ ଥାଇ ସେଇ ଗୀତର ସୁର ଓ ନାଚର ଶବ୍ଦ ଶୁଣି ଆମା ଆଉ ସେଠାରେ ସ୍ଥିର ହୋଇ ରହିପାରିଲେ ନାହିଁ । ନିଜର ଭୟ ଆଉ ଦୁଃଖ ପାଶୋରିପକାଇ ଗୁହା ଦୁଆର ମୁହଁରେ ଛିଡ଼ାହୋଇ ଆମା ପଣ୍ଡିମାନଙ୍କର ନାଚ ଦେଖିବାକୁ ଓ ଗୀତ ଶୁଣିବାକୁ ଲାଗିଲେ ।

ଆମାକୁ ଦେଖି ପଣ୍ଡିମାନେ ନାଚୁ ନାଚୁ କୌଶଳରେ ଖଣ୍ଡେ ବାଟ ପଛକୁ ହଟିଗଲେ । ସେତେବେଳକୁ ସେମାନଙ୍କର ନାଚ ଆଉ ଗୀତରେ ଆମା ମୁଗ୍ଧ

ହୋଇସାରିଲେଣି । ତେଣୁ ସେମାନେ ପଛୁଇଯିବାର ଦେଖି ସେ ମଧ୍ୟ ଆଗ ପଛ ନବିଚାରି ଗୁହା ମୁହଁରୁ ସେମାନଙ୍କ ଆଡ଼କୁ କେଇଂପାଦ ଆଗେଇଗଲେ । କିଛି ସମୟ ପରେ ପକ୍ଷୀମାନେ ପୁଣି ଆଉ ଥୋଡ଼ାଏ ପଛକୁ ହଟିଗଲେ । ଆମା ତ ସେତେବେଳକୁ ନାଚ ଗୀତରେ ମୁଗ୍ଧ, ସେ ମଧ୍ୟ ନିଜ ଅଜାଣତରେ ସେମାନଙ୍କ ଆଡ଼କୁ ଆଉ କେତେପାଦ ଆଗେଇଗଲେ । ଏହିପରି ନାଚ ଗୀତ ଚାଲୁଚାଲୁ କିଛି ସମୟ ପରେ ଆମା ସେଇ ଗୁହାଠୁ ଖଣ୍ଡେ ଦୂରରେ ଥିବା ଗୋଟାଏ ପଡ଼ିଆ ଭିତରେ ପହଞ୍ଚିଗଲେ । ଏତିକବେଳେ ହଠାତ୍ ଗୀତ ବନ୍ଦ କରି ଆମାକୁ ଘୁଣ୍ଡାଇପକାଇ ପକ୍ଷୀମାନେ କହିଲେ—"ତୁମକୁ ଆଉ ଆମେ ଛାଡ଼ିବୁ ନାହିଁ, ତୁମକୁ ଏବେ ନିଜ ସିଂହାସନରେ ବସିବାକୁ ହେବ ।"

ଏକଥା ଶୁଣି ଆମା ଶଙ୍କି ଯାଇ କହିଲେ—"ମୁଁ ସେଠିକି ଯିବି କିପରି ? ସେଠି ପରା ମୋର ଭାଇ ରଣମୂର୍ତ୍ତି ଧରି ଉତ୍ପାତ ହେଉଛନ୍ତି !"

ପକ୍ଷୀମାନେ ଭରସା ଦେଇ କହିଲେ—"ଏଇ କଥାକୁ ତୁମେ ଭୟ କର ନାହିଁ, ଆମେ ଏତେଜଣ ପକ୍ଷୀ ରହିଛୁ—ଆମେ ସମସ୍ତେ ମିଶି ତୁମ ଭାଇଙ୍କୁ ସେଠାରୁ ତଡ଼ିଦେବୁ ।"

ଏହାପରେ ପକ୍ଷୀମାନେ ଏକାଠି ହୋଇ ସୁସାନୋକୁ ସୂର୍ଯ୍ୟଲୋକର ରାଜ-ପ୍ରାସାଦରୁ ଜବରଦସ୍ତ ତଡ଼ିଦେଲେ । ସେ ଯିବା ପରେ ଆମା ଆସି ପୁଣି ନିଜ ସିଂହାସନରେ ବସିଲେ । ଆମା ସିଂହାସନରେ ବସିବା ମାତ୍ରେ ସୂର୍ଯ୍ୟର ଦୀପ୍ତି ପୁଣି ଫେରିଆସିଲା । ଆଲୁଅ ଓ ଉତ୍ତାପରେ ସାରା ପୃଥିବୀ ଭରିଗଲା । ଜୀବ ଜନ୍ତୁ, ଗଛ ଲତା ସମସ୍ତେ ଆନନ୍ଦରେ ହସିଉଠିଲେ ।

ଏଣେ ପକ୍ଷୀମାନଙ୍କଠୁ ତଡ଼ାଖାଇବା ପରେ ସୁସାନୋ ନିଜ ରାଜ୍ୟକୁ ଫେରିଆସି ପ୍ରଚଣ୍ଡ ବେଗରେ ସାତ ସମୁଦ୍ରକୁ ମନ୍ଥି ପକାଇବାକୁ ଲାଗିଲେ । ପାହାଡ଼ ପରି ଉଚ୍ଚ ଢେଉମାନ ଉଠି କୂଳରେ ପିଟି ହେବାକୁ ଲାଗିଲା, ଆଉ ସେଇ ଲହଡ଼ିରେ କେତେ ମଗର ଆଉ ମାଛ ଯେ ପିଟି ହୋଇ ପ୍ରାଣହରାଇଲେ ତା'ର ହିସାବ ନାହିଁ । କିଛି ଦିନ ଏହିପରି ଖଣ୍ଡ ପ୍ରଳୟ କରିବା ପରେ ସୁସାନୋଙ୍କ ରାଗ ଟିକିଏ ଊଣା ପଡ଼ିଲା ସତ, ମାତ୍ର ମନର ଦୁଃଖ ଯେପରିକି ସେହିପରି ରହିଗଲା । ତେଣୁ ନିଜ ମନକୁ ଭୁଲାଇବା ସକାଶେ ସମୁଦ୍ର ଓ ନଈନାଳ ବାଟେ ପୃଥିବୀ ବୁଲି ଦେଖିବା ଲାଗି ସେ ବାହାରିଲେ ।

ଏହାପରେ ବୁଲୁବୁଲୁ କଛୁ ଦିନ ପରେ ଗାଁଟାଏ ନଈବାଟେ ଯାଉ ଯାଉ ସୁସାନୋ ଦେଖିଲେ ଯେ ନଈ କୂଳରେ ବୁଢ଼ୀଟିଏ ଗୋଟିଏ ଖୁବ୍ ସୁନ୍ଦରୀ ଝିଅକୁ କୁଣ୍ଢାଇ କାନ୍ଦୁଛି ଆଉ ତା ପାଖରେ ବସି ଜଣେ ବୁଢ଼ା ବି ଆଖିରୁ ଲୁହ ଗଡ଼ାଉଛି । ସେମାନଙ୍କ କାନ୍ଦ ଦେଖି ସୁସାନୋଙ୍କ ମନରେ ବଡ଼ କଷ୍ଟ ହେଲା । ପାଣି ଭିତରୁ ଉଠି ଆସି ସେ ପଚାରିଲେ—"ତୁମେମାନେ କିଏ ? ଏପରି କାନ୍ଦୁଛ କାହିଁକି ?"

ବୁଢ଼ା ଜବାବଦେଲା—"ଆମ ଦୁଃଖ କଥା କହିଲେ ନ ସରେ । ମୋର ଆଠୋଟି ଝିଅ ଜନ୍ମହୋଇଥିଲେ, ଏବେ କେବଳ ଏଇ ଗୋଟିକ ବଞ୍ଚି ରହିଛି । ହେଇ ଦୂରରେ ଯେଉଁ ପାହାଡ଼ଟା ଦେଖୁଛ, ସେଠି ଗୋଟାଏ ମସ୍ତବଡ଼ ଅଜଗର ସାପ ଅଛି । ସେ ସାପର ଆଠଟା ଫଣା । ପ୍ରତିବର୍ଷ ଏଇ ଦିନ ଆସି ସେ ମୋର ଗୋଟାଏ ଲେଖାଁ ଝିଅକୁ ଗିଳିପକାଏ । ଏହିପରି ମୋର ସାତୋଟି ଝିଅ ତା ପେଟକୁ ଯାଇଛନ୍ତି । ଆଜି ସଞ୍ଜ ବେଳକୁ ଏ'ଟି ମଧ୍ୟ ତା ପେଟକୁ ଯିବ । ତା ପରେ ମୋର ପିଲାପିଲି ଆଉ କେହି ରହିବେ ନାହିଁ ।" ଏହା କହି ବୁଢ଼ା ପୁଣି ବିକଳ ହୋଇ କାନ୍ଦିବାକୁ ଆରମ୍ଭ କଲା ।

ତାକୁ ସାନ୍ତ୍ୱନା ଦେଇ ସୁସାନୋ କହିଲେ—"ତୁମେ କାନ୍ଦ ନାହିଁ, ମୁଁ ତୁମ ଝିଅକୁ ରକ୍ଷାକରିବି ।"

ବୁଢ଼ୀ କହିଲା—"ସେ ଅଜଗରଟା ଏଡ଼େ ବଡ଼ ଯେ ତାକୁ କେହି ମାରି ପାରିବେ ନାହିଁ । ଯିଏ ତା ସାଙ୍ଗରେ ଲଢିବାକୁ ଯିବ ସେ ନିଶ୍ଚେ ମରିବ । ତୁମେ ପର ପୁଅ—ତୁମେ ବୃଥାରେ କାହିଁକି ଆମ ସକାଶେ ନିଜ ପ୍ରାଣଟା ହରାଇବ । ଯାଅ, ତୁମେ ନିଜ ବାଟେ ବାଟେ ଚାଲିଯାଅ ।"

ସୁସାନୋ କହିଲେ—"ମୋ ପାଇଁ କିଛି ଚିନ୍ତା କର ନାହିଁ । ମତେ ସେ ସାପ ମାରି ପାରିବ ନାହିଁ । ଏବେ ମୁଁ ଯାହା କହୁଛି ମନଦେଇ ଶୁଣି ସେହିପରି କଲେ ତୁମ ଝିଅ ନିଶ୍ଚେ ରକ୍ଷା ପାଇବ । ତୁମେ ଶୀଘ୍ର ଯାଇ ହାଣ୍ଡିଏ ମହୁଲି ରସ ଆଣ । ତା ପରେ ଆଠଟା ଚୁଲି ତିଆରି କରି ସେଇ ଚୁଲିରେ ନିଆଁ ଜାଳି ତା ଉପରେ ଆଠଟା ହାଣ୍ଡି ବସାଇ ସେଥିରେ ମହୁଲିରସ ଢାଳ । ରସ ଟକମକ୍ ହୋଇ ଫୁଟିଲେ ତୁମେ ଦୁହେଁ ଝିଅକୁ ଧରି ଏ ଜାଗାରୁ ଦୂରକୁ ପଳାଇଯାଇ ଲୁଚି ରହିବ । ତେଣିକି ଯାହା କରିବାର ମୁଁ କରିବି ।"

ସୁସାନୋ କହିବା ଅନୁସାରେ ବୁଢ଼ା ବୁଢ଼ୀ ସବୁ କାମ କରିଦେଲେ । ଆଠଟା ଚୁଲି ଉପରେ ଆଠ ହାଣ୍ଡି ମହୁଲିରସ ଫୁଟିବାକୁ ଲାଗିଲା । ରସ ଫୁଟିବା

ମାତେ ବୁଢ଼ା ଓ ବୁଢ଼ୀ ଝିଅକୁ ଧରି ବହୁତ ଦୂରରେ ଥିବା ଗୋଟାଏ ଗୁମ୍ଫା ଭିତରେ ଲୁଚିଗଲେ । ଏଣେ ଫୁଟନ୍ତା ମହୁଲର ତୀବ୍ର ମିଠା ବାସନା ପବନରେ ବହୁତ ଦୂର ଯାଏଁ ବ୍ୟାପିଗଲା । ଅଜଗରଟା ନିଜ ଗୁମ୍ଫାରେ ଶୋଇଥିଲା । ମହୁଲ ବାସନା ତା ନାକରେ ବାଜିବା ମାତେ ସେ ଚମକିପଡ଼ି ଭାବିଲା "ଏଇଟା କି ଜିନିଷ ? ଏପରି ବାସନା ତ ମୁଁ କେବେହେଲେ ଶୁଙ୍ଘି ନଥିଲି !" ସେଇ ବାସନା ଶୁଙ୍ଘି ଶୁଙ୍ଘି ତାର ଆଠଟା ଯାକ ଜିଭରୁ ନାଳ ବୋହିବାକୁ ଲାଗିଲା । ଶେଷକୁ ଲୋଭରେ ଅସମ୍ଭାଳ ହୋଇ ସେ ସେଇ ବାସନା ଆଡ଼କୁ ଆଗେଇବାକୁ ଲାଗିଲା । ସାପଟା ଯେପରି ବଡ଼ ସେହିପରି ଭୟଙ୍କର । ତାର ଦେହଟା ପଚିଶ ହାତ ଲମ୍ବ ଆଉ ବଡ଼ ଶାଳଗଛ ଗଣ୍ଡି ପରି ମୋଟ । ମୁଣ୍ଡରେ ତାର ଆଠଟା ଫଣା, ପ୍ରତି ଫଣାରେ ଦୁଇଟା ଲେଖାଏଁ ବଡ଼ ବଡ଼ ବିଷଦାନ୍ତ ଓ ଗୋଟାଏ ଲେଖାଁ ହାତେ ଲମ୍ବର ଜିଭ ଲହ ଲହ ହେଉଥାଏ । ତାର ସେଇ ବିକଟାଳ ରୂପ ଦେଖିଲେ ଯେତେ ବଡ଼ ସାହସୀ ଲୋକ ସୁଦ୍ଧା ଭୟରେ ମୂର୍ଚ୍ଛା ହୋଇଯିବ ।

ଅଜଗର ଆସୁଚି ଦେଖି ଜୀବଜନ୍ତୁ ଓ ପଶୁପକ୍ଷୀ ପ୍ରାଣ ବିକଳରେ ଏଣେ ତେଣେ ଧାଇଁ ପଳାଇବାକୁ ଲାଗିଲେ । ମାତ୍ର ଆଜି ଅଜଗରର ସେଣିକି ଟିକେ ହେଲେ ନଜର ନାହିଁ, କାରଣ ଫୁଟନ୍ତା ମହୁଲର ବାସନା ତାକୁ ପାଗଳ କରିଦେଲାଣି । ନିଜର ବିରାଟ ଦେହଟାକୁ ଘୋଷାରି ଘୋଷାରି ଆଣି ସେ ପହଞ୍ଚିଗଲା ସେଇ ଚୂଲିଗୁଡ଼ାକ ପାଖରେ ଓ ଆଗପଛ ନବିଚାରି ନିଜର ଆଠଟା ଯାକ ଫଣା ସେଇ ଆଠଟା ହାଣ୍ଡି ଭିତରେ ବୁଡ଼ାଇ ଶୁହୁଁ ଶୁହୁଁ ସବୁତକ ରସ ଶୋଷିଦେଲା । ତା ପରେ ଆଉ ଯାଏ କୁଆଡ଼େ । ଏକେ ତ ମହୁଲ ରସରେ ସହଜେ ନିଶା ହୁଏ, ତେଣୁ ଆଠ ହାଣ୍ଡି ରସ ଏକ ସଙ୍ଗରେ ପିଇ ଦେବା ଫଳରେ ଶୁହୁଁ ଶୁହୁଁ ଅଜଗରକୁ ପ୍ରବଳ ନିଶା ଘାରିପକାଇଲା, ସେହିଠାରେ ସେ ଗାଢ଼ ନିଦରେ ଅଚେତ ହୋଇ ପଡ଼ିରହିଲା ।

ଏହି ସୁଯୋଗକୁ ଅପେକ୍ଷା କରି ସୁସାନୋ ଗୋଟିଏ ଗଛ ଉପରେ ଲୁଚିରହିଥିଲା । ସେ ସଙ୍ଗେ ସଙ୍ଗେ ନିଜର ଖଣ୍ଡାଟା କାଢି, ଗଛରୁ ଓହ୍ଲାଇ ଆସି, ତାର ଆଠଟା ଯାକ ମୁଣ୍ଡ ଗଣ୍ଡିରୁ ଅଲଗା କରିଦେଲା । ତା'ପରେ ସେଇ କଟା ମୁଣ୍ଡତକ ନେଇ ବୁଢ଼ା ବୁଢ଼ୀଙ୍କୁ ଦେଖାଇ କହିଲା—"ଏଇ ଦେଖ ତମ ଶତ୍ରୁ ସାପର ଦଶା ··ଆଉ ତୁମର ଭୟ କ'ଣ ?"

ଏହା ପରେ ବୁଢ଼ା ବୁଢ଼ୀଙ୍କ ଆନନ୍ଦ କହିଲେ ନସରେ । ସେମାନେ ସୁସାନୋଙ୍କ ସଙ୍ଗରେ ନିଜ ଝିଅକୁ ବିଭା କରାଇବାକୁ ଚାହିଁଲେ । ସୁସାନୋ ମଧ୍ୟ ଝିଅଟିକୁ ମନେ ମନେ ବହୁତ ପସନ୍ଦକରିଥିଲେ । ତେଣୁ ଏଇ ପ୍ରସ୍ତାବରେ ସେ ସଙ୍ଗେ ସଙ୍ଗେ ରାଜିହୋଇଗଲେ ।

ବିଭାଘର ପରେ ଝିଅଟିକୁ ସଙ୍ଗରେ ଧରି ସୁସାନୋ ନିଜ ରାଜ୍ୟ ସମୁଦ୍ରକୁ ଫେରିଯିବାକୁ ବସିଲେ । ମାତ୍ର ସମୁଦ୍ର ଭିତରେ ପଶିବା ଲାଗି ଝିଅଟି ଆଦୌ ରାଜି ହେଲା ନାହିଁ । ପାଣି ଭିତରେ ରହିବା ଲାଗି ତାକୁ ବଡ଼ ଭୟ ଲାଗିଲା । ବୁଢ଼ାବୁଢ଼ୀ ମଧ୍ୟ ସୁସାନୋକୁ ଆଉ ପାଣିକୁ ଫେରି ନ ଯିବା ଲାଗି ବାରମ୍ବାର ଅନୁରୋଧକଲେ । ସେମାନଙ୍କ କଥା ମାନି ସୁସାନୋ ସେଇ ନଈ କୂଳରେ ଗୋଟାଏ କୋଠା ତିଆରି କରି ନିଜ ସ୍ତ୍ରୀକୁ ଧରି ରହିଲେ । ସମୟ ସମୟରେ ସେ ସମୁଦ୍ର ଭିତରେ ପଶି ନିଜ ରାଜ୍ୟର ହାଲ ବୁଝି ଆସନ୍ତି, ବାକି ସମୟ ନଈରରେ ସ୍ତ୍ରୀ ପାଖରେ ରହନ୍ତି । ଏଣିକି ତାଙ୍କ ମନରୁ ଦୁଃଖ ଓ ରାଗ ଦୂର ହୋଇଗଲା ଏବଂ ସାରା ସୃଷ୍ଟି ଶାନ୍ତହେଲା ।

## ଦଶହଜାର ହୀରା

ଜାପାନ ଦେଶର ଜଣେ ସୈନିକ ସେ । ତାର କାମ ହେଲା ସମୁଦ୍ର କୂଳରେ ବୁଲି ବୁଲି ଲକ୍ଷ୍ୟ କରିବା କୌଣସି ଶତ୍ରୁ ଜାହାଜ ନିଜ ଦେଶ ଆଡ଼କୁ ଆସୁଛି କି ନାହିଁ । ତେଣୁ ପ୍ରତିଦିନ ସୈନିକଟି ସମୁଦ୍ର କୂଳର ନାନା ଅଞ୍ଚଳରେ ବୁଲି ବୁଲି ନଜର ରଖୁଥାଏ । ଦିନେ ଏହିପରି ବୁଲୁ ବୁଲୁ ଗୋଟାଏ ଦ୍ୱୀପ ପାଖରେ ସେ ଦେଖିଲା ଯେ ଗୋଟାଏ ଅଦ୍ଭୁତ ଜୀବ ସେଇ ବାଲି ଉପରେ ପଡ଼ି ଛଟପଟ ହେଉଛି । ଜୀବଟା ଗୋଟାଏ ମାଙ୍କଡ଼ ପରି ଦିଶୁଥାଏ, ମାତ୍ର ତାର ଦେହ ଯାକ ମାଛପରି କାତି । ପୁଣି ତାର ମୁଣ୍ଡ ଉପରେ ଦୁଇଟା ସାନ ସାନ ଶିଙ୍ଘ ମଧ୍ୟ ବାହାରିଥାଏ । ଜୀବଟାକୁ ଦେଖି ସୈନ୍ୟଟି ଚମକିପଡ଼ିଲା । ତା ପରେ ସେଟା କ'ଣ ବୁଝିନପାରି ତାକୁ ମାରିଦେବା ଲାଗି ନିଜ ଅଣ୍ଟାରୁ ଖଣ୍ଡା ବାହାରକଲା । ଜୀବଟା ପଳାଇନପାରି ସ୍ଥିର ହୋଇ ରହିଲା ଏବଂ ମଣିଷ ପରି

କହିବାକୁ ଲଗିଲା—"ମତେ ମାର ନାହିଁ, ମତେ ମାର ନାହିଁ ।" କହୁ କହୁ ତା' ଆଖିରୁ ଧାର ଧାର ହୋଇ ଲୁହ ଝରିପଡ଼ିଲା ।

ଆଶ୍ଚର୍ଯ୍ୟ ହୋଇ ଖଣ୍ଡାଟି ତଳକୁ କରି ସେ ପଚାରିଲା—"ତୁମେ କିଏ ? ଏଠି କ'ଣ କରୁଚ ?"

ଜୀବଟି କହିଲା—"ମୋ ନାଁ ସାମେହିତୋ । ମୁଁ ସମୁଦ୍ର ତଳର ଜୀବ । କୌଣସି କାରଣରୁ ସମୁଦ୍ରର ରଜା ମୋ ଉପରେ ରାଗିଯାଇ ମତେ ନିଜ ଦେଶରୁ ତଡ଼ିଦେଇଛନ୍ତି । ପାଣି ବିନା ମୁଁ ବଞ୍ଚିପାରେନାହିଁ । ତେଣୁ ତୁମେ ମାରିଲେ ମୁଁ ତ ମରିବି, ଆଉ ତୁମେ ନ ମାରିଲେ ବି କିଛି ସମୟ ପରେ ମୁଁ ଏଇ ଶୁଖିଲା ବାଲିରେ ପଡ଼ି ମରିଯିବି ।"

ତା' କଥା ଶୁଣି ସୈନ୍ୟଟିର ମନ ଦୟାରେ ତରଳି ଗଲା । ସେଠୁଁ ଥୋଡ଼ାଏ ଦୂରରେ ଗୋଟାଏ ବଡ଼ ପୋଖରୀ ଥିଲା । ସୈନ୍ୟଟି ନିଜ କାନ୍ଧରେ ସାମେହିତୋକୁ ଟେକିନେଇ ସେଇ ପୋଖରୀ ଭିତରେ ଛାଡ଼ିଦେଲା । ତେଣିକି ପ୍ରତିଦିନ ଘନ୍ତ୍ର ବାହାରିବା ସମୟରେ ସୈନିକଟି ନିଜ ସଙ୍ଗରେ ନାନା ପ୍ରକାର ଭଲ ଭଲ ଖାଇବା ପଦାର୍ଥ ଆଣି ସେଇ ପୋଖରୀ କୂଳରେ ପହଞ୍ଚି 'ସାମେହିତୋ 'ସାମେହିତୋ' ବୋଲି ଡାକପକାଏ । ତାର ଡାକ ଶୁଣି ସାମେହିତୋ ପୋଖରୀ ଭିତରୁ ବାହାରି କୂଳରେ ପହଞ୍ଚିବା ମାତ୍ରେ ସେ ଆଣିଥିବା ଜିନିଷଗୁଡ଼ିକ ତାକୁ ଖାଇବାକୁ ଦିଏ । ତା'ପରେ କିଛି ସମୟ ତା' ସଙ୍ଗରେ ଗପସପ ହୋଇ ସେ ପୁଣି ନିଜ କାମକୁ ବାହାରିଯାଏ । ଏହିପରି ସେମାନଙ୍କ ଭିତରେ ଗଭୀର ବନ୍ଧୁତା ଜନ୍ମିଲା । ଶେଷକୁ ଦୁହେଁ ଦୁହିଁଙ୍କୁ ଏପରି ସ୍ନେହ କରିବାକୁ ଲଗିଲେ ଯେ, କୌଣସି କାରଣରୁ ଦିନ ଗୋଟାଏ ସେମାନଙ୍କର ଦେଖାନହେଲେ ଦୁହିଁଙ୍କ ମନ ଧାଁ ଧାଁ ଚକଟିହୁଏ ।

ଏପରି ସମୟରେ ଗୋଟାଏ ବିଶେଷ ଘଟଣା ଘଟିଲା । ପାଖ ସହରରେ ଜଣେ କୋଟିପତି ଶେଠଙ୍କର ଘର । ତାଙ୍କର ଗୋଟିଏ ବୋଲି ଝିଅ । ଝିଅଟିର ରୂପ ଆଉ ଗୁଣ ଏଡ଼େ ସୁନ୍ଦର ଯେ ସମସ୍ତେ ତାକୁ ଦେଖିଲେ ମୁଗ୍ଧ ହୋଇଯାଆନ୍ତି । ଗୋଟାଏ ଛୁଟି ଦିନରେ ସୈନିକଟି ସେଇ ସହରକୁ ବୁଲିବା ଲଗି ଯାଇଥିଲା । ସେଦିନ ସେଇ ଝିଅଟି ମଧ ତାର ଦୁଇ ଜଣ ସଖୀଙ୍କୁ ସାଙ୍ଗରେ ଧରି ସହର ମଝିରେ ଥିବା ଫୁଲ ବଗିଚାକୁ ବୁଲିବା ଲଗି ଯାଇଥିଲା । ସେଇ ବଗିଚା ପାଖରେ ସୈନିକ ଏଇ ଝିଅଟିକୁ ଦେଖିପାରିଲା । ତାକୁ ଦେଖିବା ମାତ୍ରେ

ସୈନିକଟି ଏପରି ମୁଗ୍ଧ ହୋଇଗଲା ଯେ ସେ ସ୍ଥିର କଲା ସେଇ ଝିଅଟି ଛଡ଼ା ଆଉ କାହାକୁ ସେ ବିଭା ହେବ ନାହିଁ ।

ସୈନିକର ବଳିଷ୍ଠ ଓ ଉଜ୍ଜ୍ୱଳ ରୂପ ଦେଖି ଝିଅଟି ମଧ୍ୟ ମନେ ମନେ ତାକୁ ପସନ୍ଦ କରିଥିଲା । ତେଣିକି ତା ସହିତ ଭେଟ ହେବା ଲାଗି ଝିଅଟି ପ୍ରତି ଛୁଟି ଦିନ ସେଇ ଫୁଲବଗିଚାକୁ ବୁଲିବାକୁ ଆସେ ଏବଂ ସୈନିକଟି ମଧ୍ୟ ତା'କୁ ଅପେକ୍ଷା କରି ସେଠି ବସିଥାଏ । ଏହିପରି କିଛିଦିନ ବିତି ଯିବା ପରେ ଶେଷକୁ ଅବସ୍ଥା ଏପରି ହେଲା ଯେ ସେମାନେ ଦୁହେଁ ଆଉ ପରସ୍ପରକୁ ଛାଡ଼ି ରହିପାରିଲେ ନାହିଁ । ତେଣୁ ଦିନେ ସୈନିକଟି ଯାଇ ଝିଅର ବାପାଙ୍କ ସଙ୍ଗେ ଦେଖାକରି ନିଜ ମନ କଥା ଫିଟାଇ କହିଲା । ସୈନିକର କଥା ଶୁଣି ଶେଠଜୀ ରାଗିବେ କି ହସିବେ କିଛି ବୁଝିପାରିଲେ ନାହିଁ । ଶେଷକୁ କହିଲେ—"ତୁମେ ବାମନ ହୋଇ ଚନ୍ଦ୍ରମାକୁ ହାତ ବଢ଼ାଉଚ । ତୁମେ ଜଣେ ସ୍ୱର ସୈନିକ । କେତେ ଟଙ୍କାବା ଉପାର୍ଜନ କରୁଚ ? ତୁମର ଧନ ସମ୍ପତ୍ତି ବା କଣ ଅଛି ? ମୁଁ କୋଟି କୋଟି ଟଙ୍କାର ମାଲିକ । ତେଣୁ ମୋର ଏଇ ଗୋଟିଏ ବୋଲି ଝିଅକୁ ମୁଁ କିପରି ଅଏସରେ ମଣିଷ କରିଚ ସେ କଥା ତୁମେ ବୁଝିପାରୁଥିବ । ତୁମେ କେଉଁ ପସନ୍ଦରେ ତାକୁ ବାହା ହବା କଥା ମୁହଁରେ ଧରୁଚ ? ସେ ସବୁ ଅସମ୍ଭବ ଚିନ୍ତା ଛାଡ଼ି ଘରକୁ ଫେରିଯାଅ ।"

ମାତ୍ର ସୈନିକଟି ସହଜେ ନଛାଡ଼େ । ସଞ୍ଜ ପାଏ ସେ ଶେଠଜୀଙ୍କ ପାଖରେ ବସିରହି କହିବାକୁ ଲାଗିଲା—"ଆପଣ ଯାହା କହିବେ ମୁଁ ମାନିବାକୁ ରାଜି, ମାତ୍ର ଆପଣଙ୍କ ଝିଅକୁ ମୁଁ ନିଶ୍ଚେ ବିଭାହେବ ।" ଶେଷରେ ଏ ଲୋକଟା ହାତରୁ ରକ୍ଷା ପାଇବା ଲାଗି ଶେଠଜୀ ଗୋଟାଏ ଉପାୟ ପାଞ୍ଚିଲେ । ସେ ସୈନିକକୁ କହିଲେ—"ତୁମେ ଯଦି ମତେ ଦଶହଜାରଟା ହୀରା ଆଣିଦବ, ତେବେ ମୁଁ ତମ ସଙ୍ଗରେ ମୋ ଝିଅକୁ ବିଭା କରାଇଦେବି ।" ସେ ଜାଣିଥିଲେ ଯେ ଏ ଗରିବ ସୈନିକଟି ଦଶହଜାର କ'ଣ ଗୋଟିଏ ବି ହୀରା ଆଣି ପାରିବ ନାହିଁ ।

ଶେଠଜୀଙ୍କ ସର୍ତ୍ତ ଶୁଣି ସୈନିକ ମନ ଦୁଃଖରେ ନିଜ ଘରକୁ ଫେରିଲା । ରାତିସାରା ତା' ଆଖିକି ନିଦ ଆସିଲା ନାହିଁ । ହୀରା—ପୁଣି ଦଶହଜାର—ତା' ପକ୍ଷରେ ଏକାବେଳକେ ଅସମ୍ଭବ । ଏଣେ ଦଶହଜାର ହୀରା ନ ଦେଲେ ଶେଠଜୀ ତା' ସଙ୍ଗେ ନିଜ ଝିଅକୁ ବିଭା ଦେବେନାହିଁ । ପୁଣି ସେଇ ଝିଅକୁ ବାହାହୋଇ ନପାରିଲେ ତା' ଜୀବନ ବୃଥା । ତେଣୁ କଣ କରିବ କିଛି ବୁଝି-ନପାରି ରାତିସାରା ସେ ଅନିଦ୍ରା ରହିଲା ।

ପରଦିନ ସକାଳୁ ଉଠି ସେ ମନେ ମନେ କହିଲା—"ଆଜ ମୁଁ ସାମେବତୋ ଲାଗି ବହୁତ ରକମ ମିଠା ଧରି ଯିବ । କାହିଁକି ନା ମୁଁ ତ ସେଇ ଝିଅକୁ ବାହାହେଇ ପାରିବ ନାହିଁ ଏବଂ ସେଥିଲାଗି ମୁଁ ନିଶ୍ଚେ ଆତ୍ମହତ୍ୟା କରିବ । ମୁଁ ମଲାପରେ ସାମେବତୋକୁ କିଏ ଅବା ଭଲ ଜିନିଷ ଖାଇବାକୁ ଦେବ ? ତେଣୁ ଆଜ ମୁଁ ଶେଷ ଥର ଲାଗି ତାକୁ ଖୁବ୍ ଭଲ ଚିଜ ଖୁଆଇବ ।" ଏହିପରି ଭାବି ସେ ଖାଦ୍ୟ ପୁଡ଼ିଆଟି ଧରି ପୋଖରୀ ତୁଠରେ ପହଞ୍ଚି ଡାକିବାମାତ୍ରେ ସବୁଦିନ ପରି ସାମେବତୋ କୂଳରେ ଆସି ପହଞ୍ଚିଗଲା । ତାକୁ ମିଠା ଖୁଆଉ ଖୁଆଉ ସୈନିକଟି କାନ୍ଦିପକାଇ କହିଲା—"ବନ୍ଧୁ, ତୁମ ସଙ୍ଗରେ ଏଇ ମୋର ଶେଷ ଦେଖା । କାଲି ସକାଳକୁ ମୁଁ ଆଉ ନଥିବ ।"

ତାର କଥା ଶୁଣି ଓ କାନ୍ଦ ଦେଖି ସାମେବତୋ ଆଖିରୁ ବି ଧାର ଧାର ହୋଇ ଲୁହ ଝରିପଡ଼ିଲା । ମାତ୍ର କି ଆଶ୍ଚର୍ଯ୍ୟ ! ଟୋପାଏ ଲେଖାଁ ତାର ଲୁହ ଭୂଇଁରେ ପଡ଼ିବା ମାତ୍ରେ ତାହା ଗୋଟାଏ ଲେଖାଏଁ ହୀରା ପାଲଟିଗଲା । ଏ କଥା ଦେଖି ସୈନିକଟି ଖୁସିରେ ହସି ହସି କହିପକାଇଲା—"ମୁଁ ବଞ୍ଚିଗଲି, ମୁଁ ବଞ୍ଚିଗଲି ।" ଏକଥା ଶୁଣିବା ମାତ୍ରେ ସାମେବତୋର କାନ୍ଦ ବି ବନ୍ଦ ହୋଇଗଲା । ମାତ୍ର ସେ ଯାଏଁ ଦଶହଜାର ହୀରା ପୂରିହୋଇନଥାଏ । ତେଣୁ ବିକଳ ହୋଇ ସୈନିକଟି ତାକୁ କହିଲା—"ଭାଇ ସାମେବତୋ, ଦଶହଜାର ହୀରା ମୋର ଲୋଡ଼ା । ତୁମେ ମୋ ଲାଗି ଆଉ କିଛି ସମୟ କାନ୍ଦ ।"

ସାମେବତୋ କହିଲା—"ତୁମ ଦୁଃଖ ଦେଖି ସିନା ମୁଁ କାନ୍ଦୁଥିଲି, ଏବେ ବୃଥାଟାରେ କାନ୍ଦିବ କିପରି ?"

ହତାଶ ହୋଇ ସୈନିକ କହିଲା—"ତେବେ ଉପାୟ କଣ ?"

ଟିକେ ଚିନ୍ତାକରି ସାମେବତୋ ଜବାବଦେଲା—"ତୁମେ ମତେ ପୁଣି ସମୁଦ୍ର ପାଖକୁ ନେଇଯାଅ । ସେଠାକୁ ଗଲେ ଘରକଥା ମନେପକାଇ ମୁଁ କାନ୍ଦିବ, ଆଉ ତୁମେ ହୀରା ଗୋଟାଇନେବ ।"

ସୈନିକଟି ସେହିପରି କଲା । ସମୁଦ୍ର କୂଳରେ ପହଞ୍ଚି ସାମେବତୋ ତା'ର ଘର ଓ ପରିବାର କଥା ଭାବି କାନ୍ଦି କାନ୍ଦି ସୈନିକ ଦଶହଜାର ହୀରା ଗୋଟାଇ ଆଣିଲା । ତା' ପରେ ତାକୁ ନେଇ ସେଇ ପୋଖରୀରେ ଛାଡ଼ିଦେଲା ।

ସୈନିକଟି ସେଇ ଦଶହଜାର ହୀରା ନେଇ ଶେଠଙ୍କୁ ଦେଲା । ଶେଠ ତାହା ପାଇ ତାଙ୍କ ଝିଅକୁ ସୈନିକ ସହ ବିବାହ କରାଇଦେଲେ । ସ୍ୱାମୀ ସ୍ତ୍ରୀ ଆନନ୍ଦରେ କାଳ କାଟିଲେ ଓ ସାମେବତୋକୁ ବହୁତ ଆଦର ଯତ୍ନ କରିବାକୁ ଲାଗିଲେ ।

---

# ବଣର ପକ୍ଷୀ

ବହୁ ବର୍ଷ ପୂର୍ବେ ଜାପାନରେ ଜଣେ ସମ୍ରାଟ ରାଜୁତି କରୁଥିଲେ । ସେ ଥିଲେ ଯେପରି କଳାପ୍ରିୟ ସେହିପରି ସୌନ୍ଦର୍ଯ୍ୟପ୍ରିୟ । ନିଜେ ରହିବା ଲାଗି ସେ ଗୋଟିଏ ଅତି ସୁନ୍ଦର ନଅର ତିଆରି କରାଇଥିଲେ । ଶଙ୍ଖମଲମଲ ପଥରରେ ତିଆରି ସେ ପ୍ରାସାଦ, ଆଉ ତା'ର କାନ୍ଥ ବାଡ଼ରେ ଖଞ୍ଜାଯାଇଥିଲା ନାନା ରଙ୍ଗର ଦାମିକା ପଥରମାନ । ଯେକୌଣସି ଲୋକ ସେ ପ୍ରାସାଦ ଦେଖିଲେ ବହୁତ ବେଳ ଯାଏଁ ମୁଗ୍ଧ ହୋଇ ଅନାଇରହୁଥିଲା ।

ନଅର ପଛପଟେ ରାଜାଙ୍କର ବଗିଚା । ସେଇ ବଗିଚା ଏତେ ବଡ଼ ଯେ ଗୋଟାଏ ପଟେ ଠିଆହେଲେ ଆରପଟର ସୀମା ଆଖିକୁ ଦେଖାଯାଏନାହିଁ । ବଗିଚା ଭିତରେ ଏତେ ପ୍ରକାର ଫୁଲ ଆଉ ଫଳଗଛ ଯେ ଗଣି ଶେଷ କରି ହେବନାହିଁ । ବଗିଚାରେ ପୁଣି ସ୍ୱଚ୍ଛ ନୀଳ ପାଣିରେ ଭରି ହ୍ରଦ । ସେଇ ହ୍ରଦ ପାଣିରେ ନାଲି, ନୀଳ, ସୁନେଲି—ନାନା ବର୍ଣ୍ଣର ସୁନ୍ଦର ସୁନ୍ଦର ମାଛ ଖେଳୁଥାନ୍ତି । ଗଛ ଡାଳରେ ଉଡ଼ିଆସି ବସନ୍ତି ନାନା ଜାତିର ବହୁ ସଂଖ୍ୟକ ପକ୍ଷୀ, ଆଉ ସେମାନଙ୍କ ଗୀତରେ ବଗିଚା ସାରା ଉଚ୍ଛୁଳିଉଠେ । ଏଇ ପକ୍ଷୀମାନଙ୍କ ଭିତରେ ସବୁଠୁଁ ଶ୍ରେଷ୍ଠ ଥିଲା ଗୋଟିଏ ହଳଦୀବସନ୍ତ । ତା'ର ମନମତାଣିଆ ମିଠା ଗୀତ ଶୁଣିଲେ ମଣିଷ କ'ଣ, ବଣର ପଶୁମାନେ ଯୁଦ୍ଧ ସବୁ ଭୁଲି ଛିଡ଼ା ହୋଇଯାଆନ୍ତି । ତା'ର ଗୀତରେ ମୁଗ୍ଧହୋଇ ଜାପାନର କବିମାନେ ତା' ବିଷୟରେ ବହୁତ ସୁନ୍ଦର ସୁନ୍ଦର କବିତା ଲେଖିଥିଲେ ।

ଦିନେ ସମ୍ରାଟ ସେଇ କବିତାରୁ କେତୋଟି ପଢ଼ି ଆଶ୍ଚର୍ଯ୍ୟ ହୋଇ କହିଲେ—"ଏ କିପରି କଥା ? ମୋର ବଗିଚାରେ ବସି ଯେଉଁ ପକ୍ଷୀ ଏତେ ସୁନ୍ଦର ଗୀତ ଗାଉଛି ତା' ଗୀତ ମୁଁ ଥରେ ହେଲେ ଶୁଣିନାହିଁ କି ତାକୁ ଆଖିରେ ଦେଖିନାହିଁ ! ଏହା ବଡ଼ ଲଜ୍ଜାର କଥା । କାଲି ମୁଁ ଗୋଟାଏ ବଡ଼ ଭୋଜି ଦେବି । ସେଇ ଭୋଜିରେ ମୋ' ରାଜ୍ୟର ସବୁ ମାନ୍ୟଗଣ୍ୟ ଲୋକ ଯୋଗଦେବେ ଆଉ ସେମାନଙ୍କ ସଙ୍ଗରେ ବସି ମୁଁ ସେଇ ହଳଦୀବସନ୍ତର ଗୀତ ଶୁଣିବି । ଶୀଘ୍ର ଯାଇ ତାକୁ ଧରିଆଣିବାର ବନ୍ଦୋବସ୍ତ କର ।"

ସମ୍ରାଟଙ୍କ ଆଦେଶ ଶୁଣି ନଅର ସାରା ଲୋକେ ଚିନ୍ତିତ ହୋଇଗଲେ । ବଣର ପକ୍ଷୀ—ତା'ର ଠିକଣା ଅବା ମିଳିବ କିପରି ? ପୁଣି ସେଇ ପକ୍ଷୀକୁ

ସମ୍ରାଟଙ୍କ ଆଗରେ ହାଜର କରିନପାରିଲେ ସେ ବିରକ୍ତ ହୋଇ ସେମାନଙ୍କୁ ଦଣ୍ଡ ଦେଇପାରନ୍ତି । ତେଣୁ ଯେକୌଣସି ପ୍ରକାରେ ସେଇ ହଳଦୀବସନ୍ତକୁ ଖୋଜି ବାହାରକରିବାକୁ ପଡ଼ିବ । ଏହାପରି ବିଚାରି ଦଳେ ପିଆଦା ଚାରିଆଡ଼େ ବୁଲି ବୁଲି ହଳଦୀବସନ୍ତର ସନ୍ଧାନ ନେବାକୁ ଲାଗିଲେ । ସେମାନେ କେତେ କବି, କେତେ ମାଳୀ, କେତେ ଶିକାରୀଙ୍କୁ ହଳଦୀବସନ୍ତ କଥା ପଚାରିଲେ, ମାତ୍ର କେହି ତା' ବିଷୟରେ କୌଣସି ଖବର ଦେଇପାରିଲେନାହିଁ । ଶେଷକୁ ଦାଣ୍ଡରେ ଖେଳୁଥିବା ଗୋଟିଏ ସାନ ଝିଅ ଧାଇଁଆସି କହିଲା—"ହଳଦୀ-ବସନ୍ତର ବସା କେଉଁଠି ସେ କଥା ମୁଁ ଜାଣିଚି ।"

ତା'କଥା ଶୁଣି ହତାଶ ପିଆଦାମାନଙ୍କ ଛାତି ଆଶା ଓ ଆନନ୍ଦରେ କୁଣ୍ଢେ ମୋଟ ହୋଇଗଲା । ଝିଅଟିକୁ କୋଳକରି ସେମାନେ କହିଲେ—"ଆମକୁ ଶୀଘ୍ର ତା'ର ବସା ପାଖକୁ ନେଇଯା ।"

ସେମାନଙ୍କୁ ସାଙ୍ଗରେ ଧରି ଝିଅଟି ଚାଲିଲା ସହର ଟପି ଗୋଟାଏ ବଣ ଆଡ଼େ । ଗହନ ବଣ ଭିତରେ ପଶି ଏଣେତେଣେ ନାନା ଆଡ଼େ ବୁଲି ବୁଲି ଶେଷକୁ ଗୋଟାଏ କୋଳି ଗଛ ତଳେ ଛିଡ଼ାହୋଇ ଝିଅଟି କହିଲା—"ଏଇଟା ହେଉଚି ତା'ର ବସା । ହେଇ ଦେଖ ସେ ଗଛ ଡାଳରେ ବସିଚି ।"

ପିଆଦାମାନେ ଉପରକୁ ଚାହିଁ ଦେଖିଲେ ସତକୁସତ ଗଛ ଅଗରେ ବସି ଦୋଳି ଖେଳୁଚି ଗୋଟିଏ ହଳଦୀବସନ୍ତ । ଏହା ଦେଖି ପାଇକମାନେ ହାତ ଯୋଡ଼ି ଏକା ସ୍ୱରରେ କହିଲେ—"ହେ ମହାମାନ୍ୟ ହଳଦୀବସନ୍ତ ପକ୍ଷୀ, ଜାପାନର ସମ୍ରାଟ କାଲି ତାଙ୍କ ପ୍ରାସାଦରେ ଗୋଟିଏ ବଡ଼ ଭୋଜିର ବନ୍ଦୋବସ୍ତ କରିଚନ୍ତି । ସେ ଅନୁରୋଧ କରିଚନ୍ତି ଯେ ଆପଣ ଅନୁଗ୍ରହ କରି ସେଇ ଭୋଜି-ସଭାରେ ପହଞ୍ଚି ଆପଣଙ୍କ ମିଠା ଗୀତ ଶୁଣାଇ ସମସ୍ତଙ୍କୁ ମୁଗ୍‌ଧକରିବେ ।" ହଳଦୀବସନ୍ତ ସେମାନଙ୍କର ଏତେ କାତର ଅନୁରୋଧ ଏଡ଼ିନପାରି ଯିବ ବୋଲି ରାଜିହେଲା । ତା'ପରେ ନିଶ୍ଚିନ୍ତ ହୋଇ, ବାଟ ବତାଇ ଦେଇଥିବା ସାନ ଝିଅଟିକୁ ବହୁତ ପୁରସ୍କାର ଦେଇ, ସେମାନେ ଫେରିଯାଇ ସମ୍ରାଟଙ୍କୁ ସବୁକଥା ଜଣାଇଲେ ।

ପରଦିନ ସନ୍ଧ୍ୟାରେ ରାଜ୍ୟସାରା ମାନ୍ୟଗଣ୍ୟ ଲୋକ ସମ୍ରାଟଙ୍କ ପ୍ରାସାଦରେ ପହଞ୍ଚିଲେ ଗୀତ ଶୁଣିବା ପାଇଁ ଓ ଭୋଜି ଖାଇବା ପାଇଁ । ଯଥା ସମୟରେ ହଳଦୀବସନ୍ତ ଆସି ପହଞ୍ଚିଗଲା । ତା' ଲାଗି ସମ୍ରାଟଙ୍କ ସିଂହାସନ ପାଖରେ ଗୋଟାଏ ବିଶେଷ ଆସନ ରଖାଯାଇଥିଲା । ସମସ୍ତେ ପହଞ୍ଚିଯିବା ପରେ

ହଳଦୀବସନ୍ତ ତା'ର ଗୀତ ଆରମ୍ଭ କଲା । ବୀଣା ବା ବଂଶୀଠାରୁ ବଳି ମିଠା ସ୍ୱରରେ ସେ ଗୋଟାକ ପରେ ଗୋଟାଏ ଗୀତ ଗାଇବାକୁ ଲଗିଲା । ତା' ଗୀତ ଶୁଣୁ ଶୁଣୁ ସମ୍ରାଟ ଓ ସେଠାରେ ଉପସ୍ଥିତ ଥିବା ସମସ୍ତେ ଭାବିବାକୁ ଲଗିଲେ ଯେ ସତେ ଯେପରି ସେମାନେ ପୃଥିବୀ ଛାଡ଼ି ସ୍ୱର୍ଗରାଜ୍ୟକୁ ଚାଲିଆସିଚନ୍ତି । ପଥର ମୂର୍ତ୍ତିଭଳି ସ୍ଥିର ହୋଇ ବସି ସେମାନେ ହଳଦୀବସନ୍ତର ଗୀତ ଶୁଣିବାକୁ ଲଗିଲେ ।

କେତେ ସମୟ ପରେ ତା'ର ଗୀତ ସରିଲା । ପ୍ରଶଂସା ଆଉ ହାତତାଳିରେ ସଭା ଘର ଫାଟିପଡ଼ିଲା । ସମ୍ରାଟ ନିଜ ହାତରେ ତାକୁ ନାନା ପ୍ରକାର ଫଳ ଖୁଆଇ କହିଲେ—"ହଳଦୀବସନ୍ତ, ତୁମ ଗୀତ ଶୁଣି ମୁଁ ଏପରି ଖୁସି ହୋଇଛି ଯେ ତାହା କଥାରେ ବୁଝାଇହେବନାହିଁ । ତୁମେ ଏଣିକି ସେଇ ବଣ ଛାଡ଼ି ମୋ ପାଖରେ ରହି ସତେ ପ୍ରତିଦିନ ତୁମର ଗୀତ ଶୁଣାଇବ । ତୁମ ଲାଗି ମୋ ଶୋଇବା ଘରେ ମୁଁ ଗୋଟାଏ ହୀରା ମୁକ୍ତାଲଗା ସୁନାର ପଞ୍ଜୁରି ତିଆରି କରାଇଦେବି । ତୁମେ ତା' ଭିତରେ ରହି ନିତି ସକାଳୁ ଗୀତ ଗାଇ ମତେ ନିଦରୁ ଉଠାଇବ ।"

ସମ୍ରାଟଙ୍କ ପ୍ରସ୍ତାବକୁ ସଭାରେ ଉପସ୍ଥିତ ଥିବା ସବୁ ଲୋକ ପସନ୍ଦ କଲେ । ମାତ୍ର ହଳଦୀବସନ୍ତଟି ବଡ଼ କାତର ସ୍ୱରରେ କହିଲା—"ହେ ସର୍ବଶକ୍ତିମାନ୍ ସମ୍ରାଟ ! ମୁଁ ବଣର ପକ୍ଷୀ; ବଣରେ ଉଡ଼ିବୁଲୁଥାଏ ବୋଲି ମନଆନନ୍ଦରେ ଗୀତଗାଏ । ମାତ୍ର ଗୋଟାଏ ପଞ୍ଜୁରିରେ ବନ୍ଦ ହୋଇ ରହିଲେ ମୋର ମନ ବଡ଼ କଷ୍ଟ ହବ ଏବଂ ତା' ଫଳରେ ମୁଁ ଗୋଟାଏ ହେଲେ ଗୀତ ଗାଇପାରିବି-ନାହିଁ । ଆପଣ ମୋର ଗୀତ ଶୁଣି ଖୁସିହୋଇଚନ୍ତି ଏହା ମୋର ବଡ଼ ଭାଗ୍ୟ । ତେଣୁ ମୁଁ ନିତି ସକାଳୁ ଆପଣଙ୍କ ଶୋଇବା ଘର ଝରକାରେ ବସି ଆପଣଙ୍କୁ ଗୀତ ଶୁଣାଇବି ।"

ହଳଦୀବସନ୍ତର ଗୀତ ଶୁଣି ସମ୍ରାଟ ଏପରି ମୁଗ୍ଧ ହୋଇଯାଇଥିଲେ ଯେ ସେ ସଙ୍ଗେ ସଙ୍ଗେ ତା'ର ଏଇ ପ୍ରାର୍ଥନା ପୂରଣକଲେ । ତା' ପରଦିନଠୁଁ ନିତି ବଡ଼ ସକାଳୁ ବଣ ଭିତରୁ ଉଡ଼ିଆସି ହଳଦୀବସନ୍ତ ବସେ ସମ୍ରାଟଙ୍କର ଶୋଇବା ଘର ଝରକା ଉପରେ, ତା'ପରେ ସେ ଗୀତ ଗାଇବା ଆରମ୍ଭ କରେ । ସମ୍ରାଟ କିଛି ସମୟ ଶୋଇ ଶୋଇ ତା'ର ଗୀତ ଶୁଣନ୍ତି । ଶେଷକୁ ଶେଯରୁ ଉଠି ତାକୁ ନାନା ପ୍ରକାର ଫଳ ଓ ମିଠା ଖୁଆଇ ବିଦାୟ କରନ୍ତି ।

ଏହିପରି ଭାବରେ ହଲଦିବସନ୍ତର ନାମ ଜାପାନସାରା ବ୍ୟାପିଗଲା ଏବଂ କବି ଓ ଲେଖକମାନେ ତା' ଗୀତର ଖ୍ୟାତି ଚାରିଆଡ଼େ ପ୍ରଚାର କରିବାକୁ ଲାଗିଲେ ।

କ୍ରମେ କ୍ରମେ ହଲଦିବସନ୍ତର ଗୀତ କଥା ଜାପାନ ଟପି ଅନ୍ୟାନ୍ୟ ଦେଶକୁ ବି ବ୍ୟାପିଗଲା । ଶେଷରେ ଚୀନ୍ ସମ୍ରାଟ ଶୁଣିପାରିଲେ ଯେ ଜାପାନ ସମ୍ରାଟ ଏପରି ଗୋଟିଏ ପକ୍ଷୀ ରଖିଚନ୍ତି ଯା' ପରି ଗୀତ ପୃଥିବୀର ଆଉ କୌଣସି ଦେଶର ପକ୍ଷୀ ଗାଇପାରନ୍ତିନାହିଁ । ଏ କଥା ଶୁଣି ଚୀନ ସମ୍ରାଟଙ୍କୁ ବଡ଼ ଅପମାନ ହେଲା । ଛାର ଜାପାନର ଗୋଟାଏ ଚିକଚଢ଼େଇ—ସେ ପୁଣି ପୃଥିବୀର ସବୁ ଦେଶର ପକ୍ଷୀମାନଙ୍କୁ ଟପିଯିବ ? ଏପରି ଅପମାନ ବରଦାସ୍ତ କରିବା ଅସମ୍ଭବ । ତେଣୁ ଏହି ବିଚିତ୍ର ପକ୍ଷୀର ଗୀତ କିପରି ଶୁଣିବାଲାଗି ଏବଂ ତା'ର ରୂପ ଦେଖିବାଲାଗି ଚୀନ ସମ୍ରାଟ କେତେଜଣ ଗୁପ୍ତଚର ପଠାଇଲେ । କିଛିଦିନ ପରେ ସେମାନେ ଫେରିଆସି କହିଲେ—"ମହିମା, ସେ ପକ୍ଷୀର ସ୍ୱରଟା ପ୍ରକୃତରେ ଖୁବ୍ ମିଠା, ମାତ୍ର ଦେଖିବାକୁ ସେ ସେପରି ସୁନ୍ଦରନୁହେଁ । ତା'ର ଦେହର ବର୍ଣ୍ଣ କପଟ ହଳଦିଆ ।" ଏ କଥା ଶୁଣି ଚୀନ ସମ୍ରାଟ ନିଜ ରାଜ୍ୟର ଶ୍ରେଷ୍ଠ କାରିଗରମାନଙ୍କୁ ଡାକି ଗୋପନରେ ଗୋଟାଏ କିଛି ଜିନିଷ ତିଆରି କରିବା ଲାଗି ଆଦେଶ ଦେଲେ ।

ତିନିମାସ ପରେ ଚୀନ ସମ୍ରାଟଙ୍କର ଜଣେ ଦୂତ ଜାପାନରେ ପହଞ୍ଚି ସମ୍ରାଟଙ୍କୁ ଗୋଟିଏ ବାକ୍ସ ଓ ଖଣ୍ଡେ ଚିଠିଦେଇ କହିଲେ—"ମହିମା, ଏଇ ଉପହାର ଓ ଏଇ ଚିଠିଟି ଆପଣଙ୍କୁ ମହାମହିମ ଚୀନ ସମ୍ରାଟ ପଠାଇଚନ୍ତି ।" ଚିଠିଟିରେ ଲେଖା ହୋଇଥାଏ—"ଚୀନ ଦେଶର କ୍ଷୁଦ୍ରକ ଚଢ଼େଇଟିଏ ଆପଣଙ୍କ ଲାଗି ପଠାଇଲି । ହଳଦିବସନ୍ତର ରୂପ ଓ ଗୀତ ସଙ୍ଗେ ତା'ର ରୂପ ଓ ଗୀତକୁ ଆପଣ ଥରେ ତୁଳନା କରି ଦେଖିଲେ ମୁଁ ଖୁସିହେବି ।" ବାକ୍ସଟି ଫିଟାଇ ଦେଖାଗଲା ଯେ ତା' ଭିତରେ ରହିଚି ସୁନାରେ ତିଆରି ହୀରା, ନୀଳା ଲଗା ଗୋଟିଏ ଅପୂର୍ବ ସୁନ୍ଦର ପକ୍ଷୀ । ସେଇ ପକ୍ଷୀର ପେଟତଳେ ଗୋଟାଏ ଚାବି ଲାଗିଥାଏ । ଚୀନ ଦୂତ ସେଇ ଚାବିଟିକୁ ମୋଡ଼ିଦେବାମାତ୍ରେ ପକ୍ଷୀଟି ତା'ର ଚକଚକିଆ ଡେଣା ମେଲାଇ ଖୁବ୍ ମିଠା ସ୍ୱରରେ ଗୀତ ଗାଇବାକୁ ଲାଗିଲା । କିଛି ସମୟ ପରେ ତା'ର ଗୀତ ସରିଯିବାରୁ ଚୀନ ଦୂତ କହିଲେ—"ସମ୍ରାଟ, ଆପଣ ପୁଣି ଗୀତ ଶୁଣିବାକୁ ଇଚ୍ଛାକଲେ ଏଇ ଚାବିଟିକୁ ମୋଡ଼ି-ଦେବେ । ଏହିପରି ଆପଣ ଯେତେଥର ଚାବି ମୋଡ଼ୁଥିବେ, ପକ୍ଷୀଟି ସେତେ ସମୟ ଯାଏଁ ଆପଣଙ୍କୁ ଗୀତ ଶୁଣାଇବ ।"

ଏଇ ଆଶ୍ଚର୍ଯ୍ୟ ପକ୍ଷୀଟି ଦେଖି ସମ୍ରାଟ ଓ ତାଙ୍କର ପାରିଷଦମାନେ ଏକା-ବେଳକେ ମୁଗ୍ଧହୋଇଥିଲେ । ସମ୍ରାଟ କହିଲେ—"ହଳଦୀବସନ୍ତ ଖୁବ୍ ମିଠା ଗୀତ ଗାଏ ସତ, ହେଲେ ସାରା ଦିନରେ ମାତ୍ର ଥରେ । କିନ୍ତୁ ଏଇ ପକ୍ଷୀଟି ମୋର ଯେତେବେଳେ ଇଚ୍ଛା ସେତେବେଳେ ଗୀତ ଗାଇ ଶୁଣାଇବ । ତା ଛଡ଼ା ଏଇ ପକ୍ଷୀର ରୂପ ଦେଖିଲେ ହଳଦୀବସନ୍ତକୁ ଆଉ ଚାହିଁ ହବ ନାହିଁ ।"

ହଳଦୀବସନ୍ତ ଏସବୁ କଥା ଶୁଣିଲା । ସେହି ଦିନଠାରୁ ସେ ଆଉ ମନ ଦୁଃଖରେ ସମ୍ରାଟଙ୍କ ପ୍ରାସାଦକୁ ଗଲାନାହିଁ । ସମ୍ରାଟ ମଧ୍ୟ କଳ ପକ୍ଷୀଟିକୁ ପାଇ ଏପରି ଖୁସି ହୋଇଯାଇଥିଲେ ଯେ ବିଚରା ହଳଦୀବସନ୍ତ କଥା ଥରେ ସୁଦ୍ଧା ମନେପକାଇଲେନାହିଁ । ନିଜର ବଡ଼ପଣ ବଜାୟ ରହିଯିବାରୁ ଚୀନ ସମ୍ରାଟଙ୍କ ଛାତି ମଧ୍ୟ ଗର୍ବରେ କୁଣ୍ଢେ ମୋଟ ହୋଇଗଲା ।

ଚାହୁଁ ଚାହୁଁ ଗୋଟାଏ ବର୍ଷ ବିତିଗଲା । ହଠାତ୍ ଜାପାନ ସମ୍ରାଟଙ୍କ ଶରୀର ବିଶେଷ ଅସୁସ୍ଥ ହୋଇପଡ଼ିଲା । ବଡ଼ ବଡ଼ ବୈଦ୍ୟମାନେ ନାନା ପ୍ରକାର ଚିକିତ୍ସା କରି ସୁଦ୍ଧା ସେ ରୋଗ ଭଲ କରିପାରିଲେ ନାହିଁ । ଶେଷକୁ ଦେଶର ସବୁଠୁ ବଡ଼ ଓ ଅଭିଜ୍ଞ ବୈଦ୍ୟ କହିଲେ—"ଏ ରୋଗର ଏକମାତ୍ର ଚିକିତ୍ସା ହେଉଛି ସମ୍ରାଟଙ୍କ ମନ ସବୁବେଳେ ଖୁସି ରହିବ । ସେ ଯାହା ଚାହୁଁଛନ୍ତି ତାଙ୍କୁ ଯୋଗାଇଦିଅ ।"

ରୋଗରେ ପଡ଼ି ସମ୍ରାଟ କେବଳ ଗୀତ ଶୁଣିବାକୁ ଚାହିଁଲେ । କଳପକ୍ଷୀଟି ଦିନସାରା ଗୀତ ଗାଉଥାଏ । ଗାଉ ଗାଉ ହଠାତ୍ ଦିନେ ତା ପେଟ ଭିତରେ ଗୁଡ଼ାଏ ଖଡ଼୍‌ଖାଡ଼୍ ଶବ୍ଦ ଶୁଭିଲା, ତା ପରେ ଆଉ ସେ ଗୀତ ଗାଇଲା ନାହିଁ । "ହାଁ, ହାଁ, କଣହେଲା"—କହି ସମସ୍ତେ ଧାଇଁଆସି ପକ୍ଷୀକୁ କେତେ ଆଉଁସା ଆଉଁସି, ହଲଚଲ କଲେ, ମାତ୍ର ଯେଉଁ କଥାକୁ ସେଇ କଥା । ସମସ୍ତଙ୍କ ମୁଣ୍ଡରେ ବଜ୍ରପଡ଼ିଲା ଯେ ଏବେ ସମ୍ରାଟଙ୍କ ରୋଗ ଭଲ ହେବ କିପରି ?

ଚାହୁଁ ଚାହୁଁ ଆଠଦିନ ବିତିଗଲା । ସମ୍ରାଟଙ୍କ ରୋଗ ପୁଣି ବଢ଼ିବାରେ ଲାଗିଲା । ମନ୍ତ୍ରୀମାନେ ଚୀନ ସମ୍ରାଟଙ୍କ ପାଖକୁ ସବୁ କଥା ଜଣାଇ ଖବର-ପଠାଇଲେ, ମାତ୍ର ଚୀନ ଦେଶରୁ ଉତ୍ତର ଆସିଲା—"ତୁମମାନଙ୍କ ହୁଡ଼ିପଣ ଯୋଗୁଁ ସେ ପକ୍ଷୀର ଯନ୍ତ୍ର ନଷ୍ଟହୋଇଯାଇଛି । ପୁଣି ତାକୁ ନୂଆକରି ସଜାଡ଼ିବାଲାଗି ଏକବର୍ଷ ସମୟ ଲାଗିବ । ଏପରି ଉତ୍ତର ଦେଖି ସମସ୍ତଙ୍କ ବୁଦ୍ଧି ବଣାହୋଇଗଲା । ବର୍ଷେ କାଳ ଗୀତ ଶୁଣିନପାରିଲେ ସମ୍ରାଟଙ୍କ ପ୍ରାଣ ନିଶ୍ଚେ ଛୁଟିଯିବ, ଅଥଚ ପକ୍ଷୀଟିର କଳ-କବ୍‌ଜାକୁ ସଜାଡ଼ ଦେବା ପରି ଜଣେହେଲେ କାରିଗର ଦେଶ ଭିତରେ ନାହାନ୍ତି ।

ଏଣେ ଗୀତ ବନ୍ଦହୋଇଯିବାରୁ ସମ୍ରାଟଙ୍କ ରୋଗ ଦିନକୁ ଦିନ ବଢ଼ିବାରେ ଲାଗିଲା । କ୍ରମେ ସେ ଏପରି ଦୁର୍ବଳ ହୋଇଗଲେ ଯେ ଶେଷକୁ ଶେଯରେ ସୁଦ୍ଧା ଉଠିବସି ପାରିଲେନାହିଁ । ରାଜ୍ୟସାରା ଲୋକେ ତାଙ୍କର ଜୀବନର ଆଶା ଛାଡ଼ି-ଦେଲେ । ରୋଗ ଶଯ୍ୟାରେ ଶୋଇ ଶୋଇ ସମ୍ରାଟଙ୍କର ମନେପଡ଼ିଗଲା ସେଇ ହଳଦିଆବସନ୍ତ କଥା । ତା ପ୍ରତି କିପରି ଅନ୍ୟାୟ ଓ ଅବିଚାର କରିଚନ୍ତି ସେକଥା ଏବେ ବୁଝିପାରି ସମ୍ରାଟ ମନେ ମନେ ବଡ଼ ଦୁଃଖ ଓ ଅନୁତାପ କରିବାକୁ ଲାଗିଲେ । ମାତ୍ର ହଳଦିଆବସନ୍ତ ଯେ କେଉଁଠି ଅଛି ତାହା ସମସ୍ତଙ୍କୁ ଅଜଣା । ତେଣୁ ନିରାଶ ହୋଇ ସମ୍ରାଟ ଶେଯରେ ଶୋଇ ଶୋଇ ନିଜ ମରଣକୁ ଅପେକ୍ଷାକରି ରହିଲେ ।

ହଠାତ୍ ଦିନେ ସକାଳୁ ସମ୍ରାଟଙ୍କ କାନକୁ ଶୁଭିଲା ଖୁବ୍ ମିଠା ଗୀତର ସ୍ୱର । ସେଇ ସ୍ୱରଟା ବି ତାଙ୍କୁ ଚିହ୍ନା ଚିହ୍ନା ମନେହେଲା । ବହୁ କଷ୍ଟରେ କଡ଼ ଲେଉଟାଇ ସମ୍ରାଟ ଦେଖିଲେ ଯେ ସେଇ ହଳଦିଆବସନ୍ତଟି କାହିଁ ଉଡ଼ିଆସି ତାଙ୍କ ଝରକା ଉପରେ ବସି ଗୀତଗାଉଚି । ତାକୁ ଦେଖି ସେ ବିକଳ ହୋଇ କହିଲେ—"ହଳଦିଆବସନ୍ତ ! ମୁଁ ତୁମ ପ୍ରତି ବଡ଼ ଅନ୍ୟାୟ କରିଚି, ତୁମେ ମତେ କ୍ଷମାକର ।"

ହଳଦିଆବସନ୍ତ କହିଲା—"ସମ୍ରାଟ, ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ଆପଣଙ୍କ ରୋଗ ଖବର ପାଇ ମୁଁ ସିଧା ଏଠାକୁ ଚାଲି ଆସିଚି । ଆପଣ ସୁସ୍ଥ ନହିବାଯାଏଁ ମୁଁ ଆପଣଙ୍କୁ ଗୀତ ଶୁଣାଇବି ।" ଏହା କହି ସେ ପୁଣି ଗୀତ ଗାଇଲା ।

ମାସକ ଭିତରେ ହଳଦିଆବସନ୍ତର ଗୀତ ଶୁଣି ଶୁଣି ସମ୍ରାଟ ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲେ । ତା ପରେ ଦରବାରରେ ବସି ହଳଦିଆବସନ୍ତକୁ 'ରାଜଗାୟକ' ପଦ ଦେଇ ତା ସକାଶେ ଦୈନିକ ଝୁଡ଼ିଏ ଲେଖାଏଁ ଫଳ ଖଞ୍ଜିଦେଲେ । ଏହା ପରେ ରାଜା ଭାଙ୍ଗିଯାଇଥିବା କଳପକ୍ଷୀଟି ଚୀନ ସମ୍ରାଟଙ୍କ ପାଖକୁ ପଠାଇ ଦେଇ ଲେଖିଲେ—"ଆପଣଙ୍କ କଳପକ୍ଷୀ ଲାଗି ବହୁତ ଧନ୍ୟବାଦ । ଯାହାର ଗୀତ ରୋଗୀର ରୋଗବେଳେ ଅକାମୀ ହୋଇଯାଏ, ହଜାର ହୀରା ମାଳା ଲାଗିଥିଲେ ସୁଦ୍ଧା ସେ ପକ୍ଷୀର ମୂଲ୍ୟ କିଛି ନାହିଁ । ହଳଦିଆବସନ୍ତ ନଥିଲେ ଏତେବେଳକୁ ମୁଁ ମରିସାରିଥାନ୍ତି ।"

ପକ୍ଷୀଟି ଫେରସ୍ତ ପାଇ ଓ ଚିଠିଟି ପଢ଼ି ଚୀନ ସମ୍ରାଟଙ୍କ ମୁହଁ ଲାଜରେ କଳାପଡ଼ିଗଲା ।

---

# ବୁଦ୍ଧିମତୀ ଝିଅ

ବହୁ ଦିନ ପୂର୍ବେ ଜଣେ ବଡ଼ ଅତ୍ୟାଚାରୀ ରଜା ଥିଲେ । ସେ ଯେପରି ଦୁଷ୍ଟ ସେହିପରି ଲୋଭୀ । ନିଜ ଧନ ଭଣ୍ଡାର ଭରିବା ଲାଗି ସେ ପ୍ରଜାମାନଙ୍କ-ଠାରୁ ଆଖିବୁଜା ଖଜଣା ଆଦାୟ କରୁଥିଲେ । କରଭାରରେ ତାଙ୍କ ଅମଳରେ ପ୍ରଜାମାନେ ଦି'ବେଳା ପେଟ ପୂରାଇ ଖାଇବାକୁ ସୁଦ୍ଧା ପାଉନଥିଲେ । ତାଛଡ଼ା କାହା ଘରେ ଗୋଟିଏ ସୁନ୍ଦରୀ ଝିଅ ଦେଖିଲେ, ସେ ତାକୁ ଜବରଦସ୍ତ ଧରି-ନେଉଥିଲେ । ତାଙ୍କର ଏପରି ଅତ୍ୟାଚାରର ଯୋଗୁଁ ଦେଶସାରା ଲୋକେ ହାୟ ହାୟ କରିବାକୁ ଲାଗିଲେ—ମାତ୍ର କେହି ପାଟି ଫିଟାଇ ପ୍ରତିବାଦ କରିବାକୁ ସାହସ କଲେନାହିଁ । କାରଣ କୌଣସି ଲୋକ ତାଙ୍କ ବିରୁଦ୍ଧରେ କିଛି କହୁ-ଥିବାର ଜାଣିପାରିଲେ, ରଜାଙ୍କ ଆଦେଶରେ ସୈନ୍ୟମାନେ ସଙ୍ଗେ ସଙ୍ଗେ ସେହି ଲୋକକୁ ଧରିନେଇ ମାରିଦେଉଥିଲେ ।

ସେହି ରାଜ୍ୟର ଏକ ପାହାଡ଼ ପାଖରେ ଗୋଟିଏ ଛୋଟ ଗାଁ । ସେହି ଗାଁରେ ତାନାକା ବୋଲି ଗୋଟିଏ ଚାଷୀ ଯୁବକ ଥିଲା । ଦୁନିଆରେ ତା'ର ବାପମା କି ଆତ୍ମୀୟ କେହି ନଥିଲେ । ତା'ର ଥିଲା ଅଳ୍ପ କିଛି ଜମି । ସେହି ଜମିତକ ଚଷି ସେ ବେଶ୍ ସୁରଖୁରରେ ଚଳିପାରନ୍ତା ମାତ୍ର ରଜା ଅମଳ ହେଉଥିବା ଫସଲର ଅଧେ ଖଜଣା ରୂପେ ନେଇଯାଉଥିବା ଯୋଗୁଁ ତାନାକା ବିଚରା ଅତି ଗରିବ ଅବସ୍ଥାରେ ଚଳୁଥିଲା । ବହୁତ ମନ ଥିଲେ ସୁଦ୍ଧା ସେ ବାହା ହେବାକୁ ସାହସ କରୁନଥିଲା; କାରଣ ସେ ଆପେ ତ ଓଳିଏ ଖାଇ ଓଳିଏ ଉପାସ ରହେ; ଆଉ ସ୍ତ୍ରୀଟି ଘରକୁ ଆଣିଲେ ତାକୁ ପୋଷିବ କିପରି ?

ତାନାକାର ସରଳ ଓ ଦୟାଳୁ ସ୍ୱଭାବ ଲାଗି ସବୁ ଲୋକେ ତାକୁ ବଡ଼ ସ୍ନେହ କରୁଥିଲେ । ଖୁବ୍ ମନ ଥିବା ସତ୍ତ୍ୱେ ଅଭାବ ଯୋଗୁଁ ତାନାକା ବାହା ହୋଇପାରୁନାହିଁ ଦେଖି ସେମାନଙ୍କ ମନରେ ଖୁବ୍ ଦୁଃଖ ହେଉଥିଲେ ସୁଦ୍ଧା ସେମାନେ ତାକୁ କୌଣସି ସାହାଯ୍ୟ କରିପାରୁନଥିଲେ, କାରଣ ସେମାନେ ନିଜେ ବି ଥିଲେ ତାନାକା ପରି ଦରିଦ୍ର । ଜଣେ ଚିତ୍ରକର ସଙ୍ଗରେ ତାନାକାର ଖୁବ୍ ବନ୍ଧୁତା ଥିଲା । ସେ ତା'ର କଷ୍ଟ ସହିନପାରି, ବହୁତ ଦିନ ପରିଶ୍ରମ କରି ଗୋଟିଏ ସୁନ୍ଦରୀ ଝିଅର ଛବିଟିଏ ଆଙ୍କି ତା' ପାଖକୁ ଆଣି କହିଲା—"ବନ୍ଧୁ,

ଏଇ ଝିଅର ଚିତ୍ରଟି ତୁମ ଘରେ ଟଙ୍ଗାଇ ଏହାକୁ ତୁମର ସ୍ତ୍ରୀ ବୋଲି ଭାବ—ତେବେ ହୁଏତ ତୁମ ମନର କଷ୍ଟ କିଛିଟା କମିବ ।" ସେଇ ଝିଅର ଛବିଟି ଯେପରି ସୁନ୍ଦର ସେହିପରି ଜୀବନ୍ତ ଦିଶୁଥାଏ । ତାନାକା ଚିତ୍ରଟି ପାଇ ତା'ର ସାଙ୍ଗକୁ ବହୁତ ଧନ୍ୟବାଦ ଦେଇ ସେଇ ଚିତ୍ରଟିକୁ ନିଜ ଶେଯ ପାଖ କାନ୍ଥରେ ଟଙ୍ଗାଇଦେଲା ।

ଏଣିକି ତାନାକା ଘରେ ରହୁଥିବା ସମୟରେ ସେଇ ଝିଅର ଚିତ୍ରଟିକୁ ବହୁତ ବେଳଯାଏ ମନ ଲଗାଇ ଦେଖେ । ଦିନ ଦିନ ଧରି ଏଇପରି ଦେଖି ଦେଖି, ଶେଷରେ ସେଇ ଛବି ପ୍ରତି ତା' ମନରେ ଖୁବ୍ ସ୍ନେହ ଭାବ ଜନ୍ମିଲା । ବେଳେ ବେଳେ ସେ ମନରେ ଭାବେ—"ଆହା, ଏଇଟି ଯଦି ଗୋଟାଏ ଛବି ନହୋଇ ସତରେ ଝିଅଟିଏ ହୋଇଥାଆନ୍ତା, ତା'ହେଲେ ତାକୁ ବାହାହୋଇ ମୁଁ କେଡ଼େ ସୁଖରେ ନଥାଆନ୍ତି !" ଶେଷରେ ଦିନେ ଆଉ ନିଜକୁ ସମ୍ଭାଳି ନପାରି ଘରୁ ବାହାରିବା ବେଳେ ସେଇ ଚିତ୍ରଟିକୁ ଚାହିଁ ସେ କହି ପକାଇଲା—"ମୋର ବଡ଼ ଇଚ୍ଛା, ମୁଁ କାମସାରି ଫେରିବା ବେଳକୁ ତୁମେ ମୋ ଲାଗି ରାନ୍ଧିବାଢ଼ି ରଖିଥାଆନ୍ତ । ସତେ କ'ଣ ତୁମେ ତା' କରିପାରିବ ?" ଏହା କହି ସେ ତା'ର ଜମି ଚାଷ କରିବା ଲାଗି ଚାଲିଗଲା । କାମରେ ଲାଗିରହି ଏ କଥା ଆଉ ତା'ର ମନେରହିଲାନାହିଁ ।

ସେଦିନ ବେଳବୁଡ଼େ କାମସାରି ଘରକୁ ଫେରିବା ବେଳେ ଖଣ୍ଡେ ଦୂରରୁ ତାନାକା ଦେଖିପାରିଲା ଯେ ତା'ର କୁଡ଼ିଆର ରୋଷାଇଘରୁ ଧୂଆଁ ବାହାରୁଛି । ସବୁଦିନ ପରି ସେଦିନ ସକାଳେ ବି ସେ ବାସି ଭାତ ଖାଇ କାମକୁ ଯାଇଥିଲା । ସକାଳେ ରାନ୍ଧିବା ଲାଗି ତାକୁ ବେଳ ହୁଏନାହିଁ । ନିତି ସଞ୍ଜରେ ଘରକୁ ଫେରି ସେ ଚୂଲି ଲଗାଇ ଭାତ ଓ ତା' ସାଙ୍ଗକୁ ଗୋଟାଏ କିଛି ତରକାରି ରାନ୍ଧେ । ତରକାରିତକ ଓ ଭାତରୁ ଅଧା ଖାଇ ସେ ରାତିରେ ଶୋଇପଡ଼େ । ବାକି ଭାତ ଅଧିକ ରଖିଦେଇଥାଏ ସକାଳୁ ଖାଇବବୋଲି । ତେଣୁ ଏପରି ସମୟରେ ତା'ର ରୋଷାଇ ଘରୁ ଧୂଆଁ ବାହାରୁଥିବା ଦେଖି ସେ ଏକାବେଳକେ ଆଶ୍ଚର୍ଯ୍ୟ ହୋଇଗଲା ।

ଦାଣ୍ଡ କୋଳପ ଫିଟାଇ ରୋଷାଇ ଘରେ ପଶି ତାନାକା ଯାହା ଦେଖିଲା ସେଥିରେ ତା'ର ବୁଦ୍ଧି ହଜିଗଲା । ସେ ଦେଖିଲା ଚୂଲିରେ ନିଆଁ ଆଉ ତା' ଉପରେ ଥାକ ଥାକ କରି ସଜାଡ଼ି ରଖାହୋଇଛି ଭାତ, ଝୋଳ ଓ ମାଛଭଜା ।

ପ୍ରଥମେ ବହୁତ ବେଳଯାଏଁ ସେ କିଛି ବୁଝିପାରିଲା ନାହିଁ । ଶେଷକୁ ତା'ର ମନେପଡ଼ିଗଲା ସେଦିନ ଘରୁ ବାହାରିବା ସମୟରେ ସେ ସେଇ ଚିତ୍ରକୁ ଯାହା କହିଯାଇଥିଲା । ତାନାକା ମନେ ମନେ କହିଲା—"ଏ ସବୁ ନିଶ୍ଚେ ସେଇ ଚିତ୍ରର ଝିଅଟି କରିଚି । କାଲି ପୁଣି ଥରେ ପରୀକ୍ଷା କରି ଦେଖିବି ମୋର ଭାବନା ଠିକ୍ କି ଭୁଲ ।" ଏହାପରେ ବଗିଚାରେ ଯାଇ ମୁହଁ ହାତ ଧୋଇ ଖାଇବସିଲା । ଖାଇ ବସି ସେ ଜାଣିପାରିଲା ଯେ ରନ୍ଧାଟା ବଡ଼ ସୁସ୍ୱାଦୁ ହୋଇଚି । ମନ ତୃପ୍ତିରେ ପେଟେ ଖାଇ ସେ ନିଦରେ ଶୋଇପଡ଼ିଲା ।

ପରଦିନ ସକାଳୁ ଉଠି କାମକୁ ଯିବା ପୂର୍ବରୁ ସେଇ ଚିତ୍ରକୁ ଅନାଇ ଟିକେ ହସିଦେଇ ତାନାକା କହିଲା—"ମୁଁ ଜାଣିପାରୁଚି ଯେ ମୋର ଦୁଃଖ ସହିନପାରି ତୁମେ କାଲି ମୋ ପାଇଁ ରାନ୍ଧିଥିଲ । ତୁମ ଦୟା ପାଇଁ ବହୁତ ଧନ୍ୟବାଦ । ଆଜି ମଧ୍ୟ ମୋ ଲାଗି ତୁମେ ରାନ୍ଧିଦେବ । ହଁ, ଆଉ ଗୋଟାଏ କଥା । ମୋର ଯୋଡ଼ାଏ ବୋଲି କମିଜ । ସେଥିରୁ ଗୋଟାଏ ଚିରିଯାଇଚି । ତେଣୁ ଗୋଟିଏ କମିଜ ପିନ୍ଧି ମୁଁ ବଡ଼ ହଇରାଣ ହେଉଚି । ଚିରା କମିଜଟା ମୋ ଶେଯ ଉପରେ ଥୁଆହୋଇଚି । ତୁମେ ସେଟାକୁ ମରାମତି କରିଦେଲେ ମୋର ବଡ଼ ଉପକାର ହେବ ।" ଏହା କହି, ଦାଣ୍ଡ ଦୁଆରେ କୋଲପ ପକାଇ ସେ ନିଜ କ୍ଷେତକୁ ଚାଲିଗଲା ।

ସେଦିନ କ୍ଷେତରେ ପହଞ୍ଚି ତାନାକା ଅନ୍ୟ ଦିନ ପରି ବେଶି ସମୟ କାମ କଲା ନାହିଁ । ଦି ତିନି ଘଣ୍ଟା ପରେ ସେ ନିଜ ଘରଆଡ଼େ ବାହାରିଲା । ଘରପାଖ ହୋଇଯିବାରୁ ଚୋରଙ୍କ ପରି ପାଦ ଚିପି ଚିପି ସେ ଝରକା ପାଖକୁ ଯାଇ ଉଙ୍କିମାରି ଦେଖିଲା ସେ ଚିତ୍ରରେ ଅଙ୍କାଯାଇଥିବା ଝିଅଟି ସଜୀବ ହୋଇ ଘର ଚଟାଣ ଉପରେ ବସି ତାର ଚିରା କମିଜଟା ମରାମତି କରୁଛି । ଚିତ୍ରଟା ଆଡ଼କୁ ଅନାଇଁ ତାନାକା ଦେଖିଲା ଯେ ସେଠି ଗୋଟାଏ ଧଳା କାଗଜ ଛଡ଼ା ଆଉ କିଛି ନାହିଁ । ଏଇ ଦୃଶ୍ୟ ଦେଖି ତାନାକା ହଠାତ୍ ଘର ଭିତରକୁ ପଶିଯାଇ ଝିଅଟି କିଛି ଜାଣି ପାରିବା ପୂର୍ବରୁ ତା' ହାତଟି ଧରିପକାଇ କହିଲା—"ତୁମେ ବଡ଼ ଭଲଝିଅ । ତୁମକୁ ମୁଁ ଆଉ କେବେଁ ଛାଡ଼ିବି ନାହିଁ । ମତେ ବାହା ହୋଇ ତୁମେ ମୋ ସାଙ୍ଗରେ ରୁହ ।"

ଝିଅଟି ପ୍ରଥମେ ଚମକିପଡ଼ିଥିଲା; ମାତ୍ର ଟିକେ ପରେ ଶାନ୍ତ ସ୍ୱରରେ କହିଲା—"ତୁମେ ଖୁବ୍ ଦୟାଳୁ ଓ ହୃଦୟବାନ୍ ଲୋକ । ତୁମକୁ ବାହା

ହେବାରେ ମୋର ଆପତ୍ତି ନାହିଁ ।" ତାର ଉତ୍ତର ଶୁଣି ତାନାକା ମନ ଖୁସିରେ ପ୍ରଥମେ ଥୋଡ଼ାଏ ନାଚପକାଇଲା । ତାପରେ କାନ୍ଥରେ ଟଙ୍ଗାହୋଇଥିବା ଧଳା କାଗଜଟାକୁ କାଢ଼ି ଆଣି ଚୂଲିରେ ଜାଳି ପାଉଁଶ କରିଦେଲା । ସେହିଦିନ ସେଇ ଝିଅଟିକୁ ସାଙ୍ଗରେ ଧରି ସେ ଗାଁର ମନ୍ଦିରକୁ ଗଲା । ମନ୍ଦିରର ପୁରୋହିତ ସେ ଦୁହିଙ୍କୁ ବାହାକରାଇଦେଲେ ।

ବାହାହବା ପରେ ଗୃହୁଁ ଗୃହୁଁ ତାନାକାର ଅବସ୍ଥା ବଦଳିଗଲା । ତା'ର ରୋଜଗାର ଆଦୌ ବଢ଼ିନଥିଲେ ସୁଦ୍ଧା ସେଇ ଝିଅଟି କେଉଁଠୁ କପରି ଭାବରେ ସବୁ ଆଣି ଘର ଚଳାଏ ସେ କଥା ତାନାକା ବୁଝିନପାରିଲେ ସୁଦ୍ଧା ଦେଖିଲା ଯେ ବାହାହବା ଦିନୁ ତା ସଂସାରରେ ଖାଇବା ବା ପିନ୍ଧିବାର ଅଭାବ ଆଉ ନାହିଁ । ଏସବୁ ଦେଖି ଲୋକମାନେ ଝିଅଟିର ବହୁତ ପ୍ରଶଂସା କରିବାକୁ ଲାଗିଲେ ଏବଂ ତାନାକା ମଧ୍ୟ ମନ ଖୁସିରେ ରହିଲା ।

କିଛିଦିନ ପର କଥା । ତାନାକା କାମକୁ ଯାଇଚି । ଏପରି ସମୟରେ ଝରକା ବାଟେ ଝିଅଟି ଦେଖିଲା ଯେ ସେମାନଙ୍କ ଘର ଆଗରେ ଦିଜଣ ଶିକାରି ବସି ମନଦୁଃଖରେ କାନ୍ଦୁଚନ୍ତି । ସେମାନଙ୍କ କାନ୍ଦ ଦେଖି ଝିଅଟିକୁ ବଡ଼ ବିକଳ ଲାଗିଲା । ସେ ସେମାନଙ୍କ ପାଖକୁ ଯାଇ ପଚାରିଲା—"ତୁମେମାନେ କିଏ ? ଏଠି ବସି କାନ୍ଦୁଚ କାହିଁକି ?"

ତା'କଥା ଶୁଣି ସେମାନଙ୍କ ଭିତରୁ ଜଣେ କହିଲା—"ଆମେ ରଜାଘରର ଶିକାରି । ରଜା ପ୍ରତିଦିନ ଦୁଇଟା କାପ୍ରାର ଝୋଳ ଖାଆନ୍ତି । ତେଣୁ ସଞ୍ଜ ବେଳ ବୁଡ଼ିବା ପୂର୍ବରୁ ଦୁଇଟା ଲେଖାଁ କାପ୍ରା ଯୋଗାଇ ଦେବା ଲାଗି ଆମ ଉପରେ ହୁକୁମ ହୋଇଚି । ମାତ୍ର ଦୁର୍ଭାଗ୍ୟକୁ ଆଜି ଗୋଟାଏ ହେଲେ କାପ୍ରା ଦେଖିବାକୁ ମିଳିଲାନାହିଁ । କାପ୍ରା ନ ଧରି ଗଲେ ରଜା ନିଶ୍ଚେ ଆମକୁ ପ୍ରାଣରେ ମାରିଦେବେ, ଆଉ ତାପରେ ଆମ ପିଲାଏ ଦାଣ୍ଡର ଭିକାରି ହୋଇ ବୁଲିବେ ।"

ଏହା ଶୁଣି ଝିଅଟି କହିଲା—"ବ୍ୟସ୍ତ ହୁଅ ନାହିଁ । ଦିହେଁ ମୋ ଘର ପାଖକୁ ଆସି କବାଟ କଡ଼ରେ ଲୁଚି ରହ । ମୁଁ ଭିତରୁ ଦୁଇଟା କାପ୍ରା ଛାଡ଼ି-ଦେବି—ତୁମେ ତାକୁ ଧରିନେଇଯିବ ।"

ଶିକାରି ଦୁହେଁ ଝିଅଟିର କଥା ଶୁଣି କବାଟ ପାଖକୁ ଆସି ଛପି ରହିଲେ । ଝିଅଟି ଘର ଭିତରେ ଖଣ୍ଡେ ଧଳା କାଗଜକୁ କଇଁଚିରେ କାଟି ଦୁଇଟା କାଗଜର କାପ୍ରା ତିଆରି କଲା । ତା' ପରେ ସେଇ କାପ୍ରା ଯୋଡ଼ାକୁ

ଫିଙ୍ଗିଦବାମାତ୍ରେ, ସେ ଦି'ଟା ପ୍ରକୃତ କାତ୍ରା ହୋଇଯାଇ କବାଟ ବାଟେ ବାହାରକୁ ଉଡ଼ିଯିବାମାତ୍ରେ ବାହାରେ ଜଗିରହିଥିବା ଶିକାରୀ ଦୁହେଁ ଖପ୍‌କିନା ସେ ଦି'ଟାକୁ ଧରିପକାଇଲେ । ତା'ପରେ ଝିଅଟିକୁ ବହୁତ ଧନ୍ୟବାଦ ଜଣାଇ ଦୁହେଁ ରଜାଙ୍କ ନଅରକୁ ଗଲେ ।

ସେଦିନ ରାତିରେ କାତ୍ରା ସୁରୁଆ ଖାଇବାକ୍ଷଣି ରଜା ପଚାରିଲେ—"ଏ କାତ୍ରା କେଉଁଠାରୁ ଆସିଲା ?"

ବଡ଼ ପୂଜାରୀ ଜଣାଇଲା—"ମହିମା, ଯେଉଁ ଶିକାରୀ ଦି'ଜଣ ସବୁଦିନେ କାତ୍ରା ଆଣନ୍ତି ସେଇମାନେ ଆଣିଛନ୍ତି ।"

ରଜା ଶିକାରୀ ଦୁହିଁଙ୍କୁ ସଙ୍ଗେ ସଙ୍ଗେ ତାଙ୍କ ପାଖକୁ ଧରି ଆଣିବା ଲାଗି ହୁକୁମ ଦେଲେ । ଧରା ହୋଇ ଦୁଇ ଶିକାରୀ ବିଚରା ଭୟରେ ଥରି ଥରି ରଜାଙ୍କ ସାମ୍ନାରେ ପହଞ୍ଚିବାରୁ ସେ କହିଲେ—"ତୁମେ ଦିହେଁ ବହୁତ ଦିନରୁ କାତ୍ରା ଆଣି ମତେ ଯୋଗାଉଛ । ହେଲେ ଆଜିକା କାତ୍ରା ପରି ସ୍ୱାଦ ଆଉ କେବେ ହେଲେ ମତେ ମିଳିନଥିଲା । ଏ କାତ୍ରା ତୁମେମାନେ କେଉଁଠୁ ଆଣିଲ ମତେ ଶୀଘ୍ର କୁହ ।"

ସେଠୁ ଶିକାରୀ ଦି'ଜଣ ସେଇ ଝିଅଟି କଥା ରଜାଙ୍କ ଆଗରେ ସବୁ ଫିଟାଇ କହିଲେ । ଏ କଥା ଶୁଣି ରଜା ସଙ୍ଗେ ସଙ୍ଗେ ତାଙ୍କର ଜଣେ ମନ୍ତ୍ରୀକୁ ଡାକି ହୁକୁମ କଲେ—"ସେଇ ଝିଅଟାକୁ କହିବ କାଲିଠୁଁ ସେ ପ୍ରତିଦିନ ମୋ ପାଇଁ ଦୁଇଟାଲେଖାଁ କାତ୍ରା ଦବ ।"

ପରଦିନ ସକାଳୁ ମନ୍ତ୍ରୀ ସେଇ ଶିକାରୀ ଦି'ଜଣଙ୍କୁ ସାଙ୍ଗରେ ଧରି ତାନାକା ଘରେ ପହଞ୍ଚି ଝିଅଟିକୁ ରଜାଙ୍କର ହୁକୁମ ଜଣାଇଦେଲେ । ଝିଅଟି ଜବାବ-ଦେଲା—"ରଜା ଯଦି ଆମର ଖଜଣା ଅଧେ ଛାଡ଼ିକରିଦେବେ ତେବେ ମୁଁ ଦୈନିକ ତାଙ୍କୁ ଯୋଡ଼ାଏ ଲେଖାଁ କାତ୍ରା ଦେବି ।" କାତ୍ରା ଲୋଭରେ ରାଜି ହୋଇ ରଜା ସେମାନଙ୍କ ଖଜଣା ଅଧା ଛାଡିକଲେ ସତ, ମାତ୍ର ସେଇ ଝିଅ ଉପରେ ସେ ମନେ ମନେ ଖୁବ୍ ରାଗିଗଲେ ଏବଂ ତାକୁ ହଇରାଣ କରିବା ଲାଗି ଉପାୟ ଖୋଜିବାକୁ ଲାଗିଲେ ।

ପରଦିନ ସକାଳୁ ଝିଅଟି ଧଳା କାଗଜରେ କାଟି ଦିଓଟି କାତ୍ରା ତିଆରି କରି ତାନାକାକୁ ଦେଇ କହିଲା—"ଏ ଦିଟା ତୁମେ ଆଗ ରଜାଙ୍କୁ ଦେଇ-ଆସ ।" କାଗଜର କାତ୍ରା ଦେଖି ତାନାକା ତ କାବା । ଭାବିଲା, ତା' ସ୍ତ୍ରୀର

ମୁଣ୍ଡ ବଣ୍ଟେ ବଗିଡ଼ିଯାଇଚ । ତା' ମନକଥା ବୁଝିପାର ସ୍ତ୍ରୀ ହସି ହସି କହିଲା— "ଭୟ କରନାହିଁ । ତୁମେ ରାଜସଭାରେ ପହଞ୍ଚିଲେ ସବୁ ଆପେ ଆପେ ଠିକ୍ ହୋଇଯିବ ।"

ବାଧହୋଇ କାଗଜ-କାପ୍ତା ଦୁଇଟି ଧରି ତାନାକା ରାଜସଭା ଆଡ଼େ ଚାଲିଲା । ସଭାଘରେ ପହଞ୍ଚି "ମହାରାଜ, ଏଇ କାପ୍ତା ହଓଟି ମୋର ସ୍ତ୍ରୀ ଆପଣଙ୍କ ଲାଗି ପଠାଇଦେଇଛି"—କହୁ କହୁ ସେ ଯୋଡ଼ିକ ପ୍ରକୃତ କାପ୍ତା ହୋଇ ତା' ହାତରୁ ଖସିଯାଇ ଉଡ଼ିବାକୁ ଲାଗିଲେ । ସଭାରେ ଉପସ୍ଥିତ ଥିବା ଲୋକମାନେ ତର ତର ହୋଇ ଧାଇଁଆସି ସେ ଯୋଡ଼ିକୁ ଧରିପକାଇଲେ । ଏ ଦୃଶ୍ୟ ଦେଖି ରାଜା ବି ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ । ତଥାପି ତାନାକାର ସ୍ତ୍ରୀ ଉପରୁ ତାଙ୍କର ରାଗ କମିଲାନାହିଁ । ଯେ କୌଣସି ପ୍ରକାରରେ ତାକୁ ଶାସ୍ତି ଦବା ଦରକାର । ତେଣୁ ତାନାକାକୁ ଧମକାଇ ସେ କହିଲେ—"ମୂର୍ଖ ଚଷା ! ତୁ କେଉଁ ସାହସରେ ମୋର ଦରବାରକୁ ଆସିଛୁ ? ମୁଁ ତୋ ସ୍ତ୍ରୀକୁ କାପ୍ତା ଲାଗି ବରାଦ ଦେଇଥିଲି । କାଲିଠୁଁ ସେ ନିଜେ ଯେପରି କାପ୍ତା ନେଇ ମୋ ପାଖକୁ ଆସେ ।" ଏହା କହି ତାକୁ ହ'ଚାରିଟା ମାରି ନିଜ ନଅରରୁ ବିଦା-କରିଦେଲେ । ଘରେ ପହଞ୍ଚି ତାନାକା ତା ସ୍ତ୍ରୀ ଆଗରେ ନିଜର ଦୁର୍ଦ୍ଦଶା କଥା କହିଲା । ସବୁ ଶୁଣି ସ୍ତ୍ରୀ ଉତ୍ତର ଦେଲା—"କିଛି ଭୟ କରନାହିଁ, ସବୁ ଠିକ୍ ହୋଇଯିବ ।"

ପରଦିନ ହଓଟି କାଗଜ କାପ୍ତା ଧରି ସେ ନିଜେ ରାଜଦରବାରରେ ପହଞ୍ଚିଲା । ତା'ର ଅପୂର୍ବ ସୁନ୍ଦର ରୂପ ଦେଖି ରଜା ସବୁ ରାଗ ଭୁଲିଯାଇ ଏକାବେଳକେ ମୁଗ୍ଧ ହୋଇଗଲେ । କାପ୍ତା ହଓଟି ଦେଇ ସେ ଫେରି-ଯାଉଥିବାବେଳେ ରଜା ତାକୁ ଡାକି କହିଲେ—"ତୁମ ରୂପ ଦେଖି ମୁଁ ବଡ଼ ଖୁସି ହୋଇଛି । ଗୋଟାଏ ଚଷା ପାଖରେ ରହିଲେ ତୁମେ କି ସୁଖ ପାଇବ ! ତାକୁ ଛାଡ଼ି ତୁମେ ମୋ ପାଖକୁ ଚାଲିଆସ । ମୁଁ ତୁମକୁ ରାଣୀକରି ରଖିବି ।"

ଝିଅଟି ବୁଲିପଡ଼ି କହିଲା—"ଆପଣଙ୍କ ଅପେକ୍ଷା ମୋର ସ୍ୱାମୀ ଯଥେଷ୍ଟ ଭଲ—ତେଣୁ ମୁଁ କଦାପି ତାଙ୍କୁ ଛାଡ଼ିପାରିବିନାହିଁ ।" ଏତକ କହି, ରଜା ଆଉ କିଛି କହିବା ପୂର୍ବରୁ ସେ ତର ତର ହୋଇ ରାଜପ୍ରାସାଦରୁ ବାହାରି ନିଜ ଘର ବାଟ ଧରିଲା । ଏକେ ତ ଖଜଣା ଛାଡ଼ି କଥାରୁ ରଜା ରାଗିଯାଇ-ଥିଲେ, ତା'ଉପରେ ପୁଣି ପଚିଶ ଜଣଙ୍କ ସାମନାରେ 'ଆପଣଙ୍କ ଅପେକ୍ଷା ମୋ ସ୍ୱାମୀ ଯଥେଷ୍ଟ ଭଲ' ବୋଲି କହିଥିବା ଯୋଗୁଁ ରାଗରେ ରଜା ରକ୍ତ-ଚୂଉଳ

ଟେଳବାଇଦେଲେ । ଛଳେ ବଳେ କୌଶଳେ ଯେ କୌଣସି ପ୍ରକାରେ ତାକୁ ନିଜ ପାଖରେ ରଖିବା ଲାଗି ସେ ସ୍ଥିର କଲେ । ତେଣୁ ପିଆଦା ପଠାଇ ତାନାକାକୁ ଡକାଇଆଣି ସେ କହିଲେ—"ତୁମ ସ୍ତ୍ରୀ ମତେ ବହୁତ ଅପମାନ କରିଛି । କାଲି ତୁମ ମୋ ଭିତରେ ଘୋଡ଼ାଦୌଡ଼ ପ୍ରତିଯୋଗିତା ହେବ । ତୁମେ ଜିତିଲେ ତୁମ ସ୍ତ୍ରୀ ତୁମ ପାଖରେ ରହିବ, ମାତ୍ର ମୁଁ ଜିତିଲେ ସେ ମୋର ପୋଇଲି ହୋଇ ରହିବ ।"

ଏ କଥା ଶୁଣି ତାନାକାର ବୁଦ୍ଧି ହଜିଗଲା । ଏକେ ତ ତାକୁ ଭଲଭାବରେ ଘୋଡ଼ା ଚଢ଼ି ଆସେନାହିଁ, ତା'ପରେ ଗୋଟାଏ ଘୋଡ଼ା ଅବା ସେ ଆଣିବ କେଉଁଠୁ ? ମାତ୍ର ତାର ସ୍ତ୍ରୀ କହିଲା—"କିଛି ଚିନ୍ତା କରନାହିଁ, ମୁଁ ସବୁ ବନ୍ଦୋବସ୍ତ କରିଦେବି ।" ଏହା କହି ସେ କିଛି ନଡ଼ା, କାଗଜ ଓ ଦୁଇଟା ବାଉଁଶ ଆଣି ଗୋଟାଏ ଧଳାଘୋଡ଼ା ତିଆରି କଲା । ତିଆରି ସରିବା ପରେ ଫୁଙ୍କିଦେବା ମାତ୍ରେ ଘୋଡ଼ାଟା ଜୀବନ୍ତ ହୋଇଗଲା । ଝିଅଟି ତାନାକାକୁ କହିଲା "ଏଇ ଘୋଡ଼ାରେ ଚଢ଼ି ପ୍ରତିଯୋଗିତାକୁ ଯାଅ; ତୁମେ ନିଶ୍ଚେ ଜିତିବ ।"

ସବୁଠୁଁ ତେଜି କଳାଘୋଡ଼ାରେ ଚଢ଼ି ରଜା ଅପେକ୍ଷା କରି ରହିଛନ୍ତି । ଏପରି ସମୟରେ ତାନାକା ତା' ଧଳାଘୋଡ଼ାରେ ଚଢ଼ି ସେଠି ପହଞ୍ଚିଗଲା । ତାନାକା ପରି ଗରିବ ଲୋକ ଗୋଟାଏ ଘୋଡ଼ା ଯୋଗାଡ଼ କରିପାରିଛି ଦେଖି ରଜା ଆଶ୍ଚର୍ଯ୍ୟ ହୋଇଗଲେ, ତଥାପି ତାନାକା ତାଙ୍କୁ ଜିଣିଯିବ ବୋଲି ସେ ବିଶ୍ୱାସ କଲେନାହିଁ । ତାନାକା ଘୋଡ଼ାଦୌଡ଼ ପଡ଼ିଆରେ ପହଞ୍ଚିବା ମାତ୍ରେ ଘୋଡ଼ାଦୌଡ଼ ଆରମ୍ଭ ହେଲା । ପ୍ରଥମେ ରଜାଙ୍କ ଘୋଡ଼ା ଖଣ୍ଡେବାଟ ଆଗକୁ ଚାଲିଗଲା । ଏହା ଦେଖି ସେଠି ଠିଆହୋଇଥିବା ଖୋସାମତିଆ ଲୋକେ ଖୁବ୍ ହାତତାଳି ମାରିଲେ । ମାତ୍ର କିଛି ପରେ ତାନାକାର ଧଳା ଘୋଡ଼ା ରଜାଙ୍କ ଘୋଡ଼ାକୁ ଟପି ବହୁତ ଆଗକୁ ଚାଲିଗଲା ଏବଂ ଏଡ଼େ ବେଗରେ ଧାଇଁବାକୁ ଲାଗିଲା ଯେ ରଜାଙ୍କ ଘୋଡ଼ା ତା'ର ପାଖାପାଖି ମଧ୍ୟ ଯାଇପାରିଲା ନାହିଁ । ତାନାକା ଜିତିଯିବାରୁ ସାଧାରଣ ଲୋକେ ମନେ ମନେ ଖୁବ୍ ଖୁସିହେଲେ ସୁଦ୍ଧା ରଜାଙ୍କ ଭୟରେ ମୁହଁରେ କିଛି କହିପାରିଲେନାହିଁ ।

ଘୋଡ଼ାଦୌଡ଼ରେ ହାରିବା ସତ୍ତ୍ୱେ ତାନାକାର ସ୍ତ୍ରୀକୁ ପାଇବାର ଆଶା ରଜାଙ୍କ ମନରୁ ଯାଇନଥାଏ । ତାନାକାକୁ ଡାକି ସେ କହିଲେ—"ଆଜି ଘୋଡ଼ାଦୌଡ଼ରେ ଜିତିଯାଇଛ ବୋଲି ନିଶ୍ଚିନ୍ତ ହୁଅନାହିଁ । ହଠାତ୍ ମୋ

ଘୋଡ଼ାର ପେଟ ଦରଜ ହେବା ଯୋଗୁଁ ସେ ପଛେଇଗଲା—ନଚେତ୍ ମୁଁ ଆଜ ନିଶ୍ଚୟ ଜିତିଥାଆନ୍ତି । କାଲି ତୁମ ମୋ ଭିତରେ ଡଙ୍ଗା ଚଳାଇବାର ପ୍ରତି-ଯୋଗିତା ହବ । ଏଥିରେ ତୁମେ ହାରିଗଲେ ମୁଁ ତୁମ ସ୍ତ୍ରୀକୁ ନେଇଆସିବି ।"

ମୁହଁ ଶୁଖାଇ ତାନାକା ଘରକୁ ଫେରିଲା । ତା'ଠୁଁ ସବୁ କଥା ଶୁଣି ତାର ସ୍ତ୍ରୀ କହିଲା—"ନିଶ୍ଚିନ୍ତ ଥାଅ, ତୁମର କିଛି କ୍ଷତି ହବ ନାହିଁ । ତୁମେ ମତେ ଗୁଡ଼ିଏ ଖଣ୍ଡ ଧଳା କାଗଜ ଆଣିଦିଅ ।" ତାନାକା ଧାଇଁଯାଇ ଗୁଡ଼ିଏ ଖଣ୍ଡ ବଡ଼ ଧଳା କାଗଜ ଆଣିଦେବାରୁ ତା' ସ୍ତ୍ରୀ ଘରରେ ବସି ସେଥିରେ ଗୋଟାଏ ସୁନ୍ଦର ଡଙ୍ଗା ତିଆରିକରି ତାନାକାକୁ ଦେଇ କହିଲା—"ଆଜ ରାତି ନପାହୁଣୁ ତୁମେ ସମୁଦ୍ର କୂଳରେ ଯେଉଁଠାରୁ ଡଙ୍ଗା ବାହିବା ଆରମ୍ଭ ହବ, ସେହିଠାକୁ ନେଇ ଯିବ । ତା'ପରେ ରଜାଙ୍କ ଡଙ୍ଗା ପହଞ୍ଚିଗଲେ ତୁମେ ଏଟାକୁ ପାଣିରେ ଭସାଇ ଚଢ଼ି ବସିବ । ସେପରି କଲେ ତୁମେ ନିଶ୍ଚେ ଡଙ୍ଗା ଚଳାଇବାରେ ଜିତିପାରିବ ।"

କାଗଜ ତିଆରି ଡଙ୍ଗାଟି ଧରି ପାହାନ୍ତାରୁ ତାନାକା ସମୁଦ୍ର କୂଳରେ ଅପେକ୍ଷା କରି ରହିଲା । ଦିନ ପହର ବେଳକୁ ରଜାଙ୍କ ସଙ୍ଗରେ ବାର ଜଣ ବେଠିଆ ଗୋଟାଏ ଖୁବ୍ ସୁନ୍ଦର ଓ ଦାମିକା ଡଙ୍ଗା ଧରି ସେଠି ଆସି ପହଞ୍ଚିଲେ । ତାନାକାର କାଗଜ ଡଙ୍ଗାଟା ଦେଖି ସେମାନେ ହସି ହସି ବେଦମ୍; ଲୋକଟାର ମୁଣ୍ଡ ବିଗିଡ଼ିଯାଇଚି ନା କ'ଣ ! ରଜା ମଧ୍ୟ ମନେ ମନେ ବଡ଼ ଖୁସି; ଏଥର ସେ ନିଶ୍ଚେ ତାନାକାର ସ୍ତ୍ରୀକୁ ପାଇପାରିବେ । ରଜାଙ୍କ ଡଙ୍ଗାଟା ପାଣିରେ ଥୁଆ ହବା ପରେ ତାନାକା ତାର କାଗଜ ଡଙ୍ଗାଟି ପାଣିରେ ରଖୁ ରଖୁ ସେ ଡଙ୍ଗାଟି ଗୋଟିଏ ଧଳା କାଠର ଡଙ୍ଗା ପାଲଟିଗଲା । ଏ ଦୃଶ୍ୟ ଦେଖି ରଜା ଓ ତାଙ୍କର ଲୋକମାନେ ତାଜୁବ ହୋଇଗଲେ । ଯାହେଉ, ତା' ପରେ ଡଙ୍ଗା ବାହିବା ଆରମ୍ଭ ହେଲା । ସୁହୁଁ ସୁହୁଁ ତାନାକାର ଧୋବ ଫିନ୍‌ଫିନ୍ ହାଲୁକା ଡଙ୍ଗାଟି ପବନ ବେଗରେ ରଜାଙ୍କ ଡଙ୍ଗାଠୁଁ ବହୁତ ଆଗକୁ ଚାଲିଗଲା । ରାଗରେ ପାଗଳ ପରି ହୋଇ ରଜା ପଛପଟୁ ଧକ୍କା ମାରି ତାନାକାର ହାଲୁକା ଡଙ୍ଗାଟାକୁ ଭାଙ୍ଗିଦବା ଲାଗି ଚେଷ୍ଟାକଲେ । ତେଣୁ ସେ ପ୍ରାଣପଣେ ଆହୁଲା ମାରି ତାନାକା ଡଙ୍ଗାରେ ଧକ୍କା ମାରିବା ମାତ୍ରେ ତାନାକା ଡଙ୍ଗାର କିଛି ହେଲା ନାହିଁ, ମାତ୍ର ତାଙ୍କ ନିଜ ଡଙ୍ଗାଟା ସେଇଠି ଓଲଟିଗଲା । ଅଗାଧ ସମୁଦ୍ରରେ ପଡ଼ି, ଅସହାୟ ରଜା "ମରିଗଲି, ମରିଗଲି" ବୋଲି ଡାକପକାଇଲେ । ରଜାଙ୍କ ବେଠିଆ-

ମାନେ ପାଣି ଭିତରକୁ କୁଦିପଡ଼ି ତାଙ୍କୁ ଟେକିଆଣିନଥିଲେ ସେଇଦିନ ତାଙ୍କ ଜୀବନ ଶେଷ ହୋଇଯାଆନ୍ତା ।

କୂଳରେ ପହଞ୍ଚିବା ବେଳକୁ ରଜାଙ୍କ ଅବସ୍ଥା କହିଲେ ନସରେ । ପେଟେ ଲୁଣିପାଣି ପିଇ ସେ ଧଇଁସଇଁ ହେଉଥାନ୍ତି, ତେଣେ ତାଙ୍କ ଜରିଲଗା ପୋଷାକ ପାଣିରେ ଭିଜି ବେଲୁନ ପରି ଫୁଲିଯାଉଥାଏ । ରାଗରେ ଥରୁ ଥରୁ ନିଜ ପୋଷାକ ଆଡ଼କୁ ଆଙ୍ଗୁଠି ଦେଖାଇ ରଜା ତାନାକାକୁ କହିଲେ—"ତୋ ସକାଶେ ମୋର ରାଜପୋଷାକ ନଷ୍ଟହେଇଗଲା । କାଲି ରଙ୍ଗୀନ ପକ୍ଷୀ ପରରେ ତିଆରି, ସୂର୍ଯ୍ୟ ତାରା ଓ ସମୁଦ୍ରର ନକ୍ସା ଥିବା ଗୋଟାଏ ପୋଷାକ ତୁ ଯଦି ମତେ ଆଣି ନଦେବୁ, ତେବେ ମୁଁ ତୋର ମୁଣ୍ଡ କାଟିଦେବି ଓ ତୋର ସ୍ତ୍ରୀକୁ ଧରିଆଣିବି ।"

ସେଦିନ ମଧ୍ୟ ତାନାକା ମୁହଁ ଶୁଖାଇ ଘରକୁ ଫେରିଲା । ତା'ଠୁଁ ସବୁ ଶୁଣି ତା'ର ସ୍ତ୍ରୀ ଟିକିଏ ଗମ୍ଭୀର ହୋଇ କହିଲା—"ସେ ରଜାର ଦୁର୍ବୁଦ୍ଧି ସୀମା ଟପିଗଲାଣି । କାଲି ତାର ଶେଷ ଦିନ । ଏଣିକି ତାକୁ ଆଉ କେହି ରକ୍ଷା କରି-ପାରିବେ ନାହିଁ ।"

ରାତିରେ ଖାଇ ପିଇ ସାରିବା ପରେ ଝିଅଟି କେତେଗୁଡ଼ିଏ କାଗଜ ଆଣି କଇଞ୍ଚିରେ କାଟି ମୟୂର, କୁକୁଡ଼ା, ଶୁଆ ଇତ୍ୟାଦି ନାନା ପ୍ରକାର ପକ୍ଷୀ ତିଆରି କଲା । ତା'ପରେ ସେଗୁଡ଼ିକୁ ଫୁଙ୍କିଦେବା ମାତ୍ରେ ସେମାନେ ପ୍ରକୃତ ପକ୍ଷୀ ହୋଇଗଲେ । ସେଠୁ ଝିଅଟି ସେମାନଙ୍କୁ କହିଲା—"ପକ୍ଷୀମାନେ, ତୁମ ଦେହର କିଛି ପର ମୋର ଜରୁରୀ ଦରକାର । ତୁମେମାନେ ନିଜ ଇଚ୍ଛାରେ ମତେ କିଛି କିଛି ପର ଦେଇଯାଅ ।" ଏ କଥା ଶୁଣି ପକ୍ଷୀମାନେ ଉଡ଼ି ଉଡ଼ି ପ୍ରତ୍ୟେକେ କେତୁଟା ଲେଖାଏଁ ପର ତଳେ ପକାଇଦେଲେ । ତାନାକା ଓ ତା'ର ସ୍ତ୍ରୀ ସବୁତକ ପର ଗୋଟାଇଆଣି ଏକାଠି କଲେ । ତା'ପରେ ସେଇ ଝିଅଟି ପରଗୁଡ଼ିକରୁ ଗୋଟିଏ ବଡ଼ ଚମତ୍କାର ରଙ୍ଗୀନ୍ ପୋଷାକ ତିଆରି କଲା ଏବଂ ସେଇ ପୋଷାକ ଉପରେ ସୂର୍ଯ୍ୟ, ତାରା ଓ ସମୁଦ୍ରର ନକ୍ସା ରହିଲା । ନାନା ବର୍ଣ୍ଣର ପକ୍ଷୀ ପରରେ ତିଆରି ସେଇ ଚକ ଚକ ପୋଷାକ ଦେଖିଲେ ବାସ୍ତବିକ ଆଖି ଝଲସିଯାଉଥାଏ ।

ପରଦିନ ସକାଳେ ତାନାକା ପୋଷାକଟି ଧରି ରଜାଙ୍କ ପାଖରେ ପହଞ୍ଚିଲା । ପୋଷାକଟା ଦେଖି ରଜା ଖୁବ୍ ଖୁସିହେଲେ ସତ, ତଥାପି ତାନାକାର ସ୍ତ୍ରୀ ଉପରୁ ତାଙ୍କର ଲୋଭ ଛାଡ଼ିଲା ନାହିଁ—ବରଂ ବଢ଼ିଲା । ତାଙ୍କର ସବୁ କୌଶଳ

ବୃଥା ହୋଇଯିବାରୁ, ଶେଷକୁ ସେ ସ୍ଥିରକଲେ ଯେ କୌଣସି ଗୋଟାଏ ଅଳରେ ତାନାକାର ସ୍ତ୍ରୀକୁ ନିଜ ନଅରକୁ ଡକାଇଆଣି ତାକୁ ସେଠାରେ ବନ୍ଦୀ କରି ରଖିବେ । ତେଣୁ ତାନାକା ଆଣିଥିବା ପୋଷାକଟି ଦେଖୁ ଦେଖୁ ସେ କହିଲେ—"ପୋଷାକଟି ଭଲ ହୋଇଛି ସତ, ମାତ୍ର ଏହାକୁ ତୁମ ସ୍ତ୍ରୀ ତିଆରି କରିଛି ବୋଲି ମୋର ବିଶ୍ୱାସ ହେଉନାହିଁ । ତାକୁ ଏଠାକୁ ଡାକିଆଣ । ସେ ମୋ ଆଗରେ ଏପରି ଆଉ ଗୋଟାଏ ପୋଷାକ ତିଆରିକଲେ ମୁଁ ବିଶ୍ୱାସ କରିପାରିବି ।"

ଏ କଥା ଶୁଣି ତାନାକା ଘରକୁ ଧାଇଁଯାଇ ତା'ର ସ୍ତ୍ରୀକୁ ଡାକିଆଣିଲା । ବାଟରେ ଆସୁ ଆସୁ ତା'ର ସ୍ତ୍ରୀ ମନକୁମନ କହିଲା—"ସେଇ ଦୁଷ୍ଟ ରଜାର ପରମାୟୁ ମାତ୍ର ଆଉ ଗୋଟାଏ ଘଣ୍ଟା ।" ଏ କଥା ଶୁଣି ଚମକିପଡ଼ି ତାନାକା କହିଉଠିଲା—"ଏ କ'ଣ କହୁଛ ତୁମେ ? ରଜାତ ଦିବ୍ୟ ସୁସ୍ଥ ସବଳ ରହିଛନ୍ତି । ପୁଣି ତାଙ୍କ ଶରୀରପାଖେ ଏତେ ଲୋକବାକ, ବୈଦ୍ୟ ଚିକିତ୍ସକ । ଆଉ ତୁମେ କିପରି କହୁଛ ଯେ ଘଣ୍ଟାକ ଭିତରେ ତାଙ୍କ ପ୍ରାଣ ଛାଡ଼ିଯିବ ? ଏତେ କାମ କରି ଶେଷରେ କ'ଣ ତୁମର ମୁଣ୍ଡ ଖରାପ ହୋଇଯାଇଛି କି ?"

ଝିଅଟି ଟିକିଏ ହସି ଉତ୍ତର ଦେଲା—"ମୋର ମୁଣ୍ଡ ଖରାପ ହୋଇନାହିଁ କି ମୁଁ ମିଛ କଥା ବି କହୁନାହିଁ । ତୁମେ ତ ମୋ ସାଙ୍ଗରେ ଯାଉଛ—ସେଠି ଯାହା ଘଟିବ ତାହା ଦେଖି ସେଥିରୁ ତୁମେ ବଳେ ଜାଣିପାରିବ ଯେ ମୋ କଥା ସତ ନା ମିଛ ।"

ତାନାକାର ସ୍ତ୍ରୀ ରଜାଙ୍କ ଦରବାରରେ ପହଞ୍ଚିବା ମାତ୍ରେ ରଜା ବଡ଼ ଖୁସି ହୋଇ ମନେ ମନେ କହିଲେ—"ଏଥର ପକ୍ଷୀ ଜାଲରେ ପଡ଼ିଛି । ଆଉ ମୋ ମୁଠା ବାହାରକୁ ଯାଇପାରିବନାହିଁ ।" ତାକୁ ଦେଖି ମୁହଁରେ ବହୁତ ପ୍ରଶଂସା କରି ରଜା କହିଲେ—"ଏ ପୋଷାକଟି ସତରେ ବଡ଼ ଚମତ୍କାର ହୋଇଛି । ଖୁବ୍ ପକ୍କା ବୁଣାଳୀ ବି ମାସକରେ ଏପରି ପୋଷାକ କରିପାରିବନାହିଁ । ତେଣୁ ଏଟା ତୁମେ ଦିନକ ଭିତରେ କିପରି କଲ ମୁଁ ବୁଝିପାରୁନି । ତୁମେ ଯଦି ମୋ ନଅରରେ ବସି ଠିକ୍ ଏଇପରି ଆଉ ଗୋଟାଏ ପୋଷାକ ମୋ ଆଖି ଆଗରେ ତିଆରି କରିଦେବ, ତେବେ ମୁଁ ତୁମ କଥା ବିଶ୍ୱାସକରିବି ଏବଂ ସେଇ ପୋଷାକଟା ଲାଗି ତୁମକୁ ଶହେଟା ସୁନା ମୋହର ପୁରସ୍କାର ଦେବି ।"

ତାନାକାର ସ୍ତ୍ରୀ କହିଲା—"ମହାରାଜ ! ଗୋଟାଏ କାହିଁକି, ଆପଣ ଚାହିଁଲେ ମୁଁ ଆପଣଙ୍କୁ ଏପରି ଦଶଟା ପୋଷାକ ତିଆରି କରି ଦେବି । ମାତ୍ର

ଏଇ ପୋଷାକଟା ମୁଁ ଅନ୍ଦାଜରେ ତିଆରି କରିଛି । ମତେ ଡର ଲାଗୁଛି କାଳେ ମାପରେ କିଛି ଭୁଲ ଥିବ । ଆପଣ ଅନୁଗ୍ରହ କରି ଥରେ ଏଟା ପିନ୍ଧିଲେ ମୋର ଆନ୍ଦାଜ ଠିକ୍ କି ଭୁଲ ମୁଁ ଜାଣିପାରିବି ।"

ଛାନାକାର ସ୍ତ୍ରୀକୁ ହାତ ମୁଠାରେ ପାଇଛନ୍ତି ବୋଲି ରଜାଙ୍କ ମନ ତ ଖୁସି । ତେଣୁ ସେ ସଙ୍ଗେ ସଙ୍ଗେ ସିଂହାସନରୁ ଓହ୍ଲାଇ ପଡ଼ି ସେଇ ନୂଆ ପୋଷାକଟା ପିନ୍ଧିପକାଇଲେ । ପୋଷାକ ପିନ୍ଧିସାରିବା ପରେ ମନ୍ତ୍ରୀମାନେ ରଜାଙ୍କୁ ଚାରିପଟୁ ବେଢ଼ିଯାଇ ପୋଷାକର ବହୁତ ପ୍ରଶଂସା କରୁଛନ୍ତି, ଏପରି ସମୟରେ ଛାନାକାର ସ୍ତ୍ରୀ ରଜାଙ୍କ ଆଡ଼କୁ ଚାହିଁ ଟିକିଏ ଫୁଙ୍କିଦେଲା । ସଙ୍ଗେ ସଙ୍ଗେ ପୋଷାକରେ ଥିବା ସମୁଦ୍ରର ନକ୍ସା ସତ ସମୁଦ୍ର ପାଲଟିଯାଇ ରଜାଙ୍କୁ ଭସାଇନେଲା । ସେଇ ଢେଉ ଭିତରେ ପଡ଼ି ରଜା 'ରକ୍ଷାକର' 'ରକ୍ଷାକର' ଡାକପକାଇବାରୁ ତାଙ୍କ ମନ୍ତ୍ରୀ ଓ ଚାକରମାନେ ପାଣି ଭିତରକୁ ଡେଇଁପଡ଼ିଲେ । ଏହା ଦେଖି ଛାନାକାର ସ୍ତ୍ରୀ ଆଉ ଥରେ ଫୁଙ୍କିଦେଲା । ଫଳରେ ହଠାତ୍ କାହୁଁ ମାଡ଼ ଆସିଲା ଗୋଟାଏ ପ୍ରବଳ ତୋଫାନ ଏବଂ ସେଇ ତୋଫାନ ମାଡ଼ରେ ପର୍ବତ ପରି ଢେଉ ଉଠି ସେଇ ଦୁଷ୍ଟ ରଜା, ତାଙ୍କର ମନ୍ତ୍ରୀ ଓ ଚାକରମାନଙ୍କୁ କେଉଁଆଡ଼େ ଯେ ଭସାଇନେଇଗଲା, ସେକଥା କେହି ଜାଣିପାରିଲେନାହିଁ ।

ଅତ୍ୟାଚାରୀ ରଜା, ତା'ର ଦୁଷ୍ଟ ମନ୍ତ୍ରୀ ଓ ଚାକରମାନେ ମରିଯାଇଛନ୍ତି ଶୁଣି ଦେଶସାରା ଲୋକେ ଛାନାକା ଓ ତା'ର ସ୍ତ୍ରୀର ବହୁତ ପ୍ରଶଂସା କଲେ ଏବଂ ସେମାନଙ୍କୁ ନାନା ପ୍ରକାର ଉପହାର ଆଣିଦେଲେ । ଏହାପରଠାରୁ ଛାନାକା ଓ ତା'ର ସ୍ତ୍ରୀ ସୁଖ ଶାନ୍ତିରେ ବସବାସକଲେ ।

## ଲୋଭର ପରିଣାମ

( ୧ )

ବହୁକାଳ ପୂର୍ବେ କଣ୍ଟାଣ୍ଟୋ ସହରରେ ଜଣେ ଲୁଗା ବେପାରୀ ଥିଲା । ସେ ସେପରି ବଡ଼ଲୋକ ନହେଲେ ବି ଲୁଗା ବିକି ଯାହା ଲାଭ ପାଏ ସେଥିରେ ତା'ର ଘରସଂସାର ଚଳିଯାଏ । ବେପାରୀର ସ୍ତ୍ରୀ ବହୁତ ଦିନରୁ ମରିଯାଇଥାଏ । ତା'ର ଦୁଇଟି ପୁଅ—ବଡ଼ଟିର ନାଁ ହିତାଚି ଓ ସାନଟିର ନାଁ ଫୁକାନ୍ । ହିତାଚି ବଡ଼ ସରଳ ଓ ନିର୍ଲୋଭ ପିଲା, ମାତ୍ର ଫୁକାନ୍ ବଡ଼ ଲୋଭୀ ଓ କୃପଣ ।

ଶୀତକାଳ । ବେପାରୀଟି ଗୋଟାଏ ଜରୁରୀ କାମରେ ଯାଇଥିଲା ଆଉ ଗୋଟାଏ ସହରକୁ । ଫେରିବା ବେଳକୁ ଅଧା ବାଟରେ ମାଡ଼ିଆସିଲା ଅଦିନ ମେଘ ଆଉ ତା' ସାଙ୍ଗକୁ ଡ଼ୁ ଡ଼ୁ ବର୍ଷା । ଗୋଟାପଣ ଓଦା ହୋଇ, ଶୀତରେ ଥରି ଥରି ସେ ନିଜ ଘରେ ଆସି ପହଞ୍ଚିଲା ସତ, ମାତ୍ର ବୁଢ଼ା ବୟସରେ ଏଇ ଥଣ୍ଡା ସେ ସହିପାରିଲାନାହିଁ । ତିନି ଚାରିଦିନ ଜ୍ୱରରେ ପଡ଼ି ସେ ସବୁଦିନ ପାଇଁ ଆଖି ବୁଜିଦେଲା । ବାପ ଚାଲିଯିବାରୁ ଦି ଭାଇ ନିଜକୁ ବଡ଼ ଅସହାୟ ବୋଧକଲେ ।

ବିପଦ ଉପରେ ପୁଣି ବିପଦ ମାଡ଼ିଆସିଲା । ହଠାତ୍ ଦିନେ ନିଆଁ ଲାଗି ତାଙ୍କ ଦୋକାନରେ ଥିବା ସବୁତକ ଲୁଗା ପୋଡ଼ି ପାଉଁଶ ହୋଇଗଲା । ଏଥର ଦିଭାଇ ମୁଣ୍ଡରେ ହାତଦେଇ ବସିଲେ, କାରଣ ମଲାବେଳକୁ ସେମାନଙ୍କ ବାପା ଟଙ୍କା ପଇସା କିଛି ରଖିଯାଇନଥିଲେ—ଏଇ ଦୋକାନଟି ଥିଲା ସେମାନଙ୍କର ପେଟ ପୋଷିବାର ଏକମାତ୍ର ଉପାୟ । ଏଣିକି କ'ଣ କରିବେ, କିପରି ଚଳିବେ—ବହୁତ ଭାବି ସୁଦ୍ଧା ସେମାନଙ୍କୁ କିଛି ବୁଦ୍ଧି ବାଟ ଦିଶିଲା ନାହିଁ । ଶେଷକୁ ଦୁଇ ଭାଇ ସହର ସୀମାରେ ଥିବା ବୁଦ୍ଧଙ୍କ ମନ୍ଦିରକୁ ଗଲେ । ସେଇ ମନ୍ଦିରରେ ଜଣେ ସନ୍ନ୍ୟାସୀ ଥାଆନ୍ତି । ସେ ଜଣେ ଖୁବ୍ ଜ୍ଞାନୀ ଓ ସିଦ୍ଧପୁରୁଷ । ମନ୍ଦିରରେ ପହଞ୍ଚି ଦିଭାଇ ତାଙ୍କ ଗୋଡ଼ତଳେ ପଡ଼ି ନିଜର ଦୁଃଖ ଜଣାଇ କହିଲେ—"ପ୍ରଭୁ, ଆପଣ କୃପା ନକଲେ ଆମେ ଦିହେଁ ଭୋକ ଉପାସରେ ମରିଯିବୁ ।" କହୁ କହୁ ଦୁହେଁ ଦୁଃଖରେ କାନ୍ଦିପକାଇଲେ । ସେମାନଙ୍କ କଥା ଶୁଣି ଓ ବିକଳ ଦେଖି ସନ୍ନ୍ୟାସୀଙ୍କ ମନରେ ବଡ଼ ଦୟା ହେଲା । ସେ ନିଜ ମୁଣି ଭିତରୁ ଗୋଟିଏ କାଠ ପେଣ୍ଡୁଲ୍ କାଢ଼ି ସେମାନଙ୍କୁ ଦେଇ କହିଲେ—"ଦେଖ, ଏଇ ପେଣ୍ଡୁଲ୍‌ଟିର ବହୁତ ଗୁଣ ଅଛି । ଏଇ ପେଣ୍ଡୁଲ୍‌ଟି ହାତରେ ଧରି ତୁମେ ଦୁହେଁ ସହର ଘୁଡ଼ ବଣ ଭିତରକୁ ଯାଅ । ମାଟି ତଳେ କେଉଁଠି କିଛି ଦାମିକା ଜିନିଷ ଥିଲେ ପେଣ୍ଡୁଲ୍‌ଟି ତୁମ ହାତରୁ ଆପଣା ଛାଏଁ ସେଇ ଜାଗାରେ ଖସିପଡ଼ିବ । ମାଟି ଖୋଳି ଯାହା ପାଇବ ସେଇଥିରେ ତୁମେମାନେ ପୁଣି କିଛି ବେପାର କରିପାରିବ । ମାତ୍ର ଗୋଟିଏ କଥା ମନେରଖ—ଭଗବାନ୍ ବୁଦ୍ଧ କହିଚନ୍ତି ଲୋଭ ହେଉଚି ମରଣର ଦୂତ । ତେଣୁ ସାବଧାନ, ବେଶି ଲୋଭ କରିବନାହିଁ; କଲେ ଘୋର ବିପଦରେ ପଡ଼ିବ ।" ସନ୍ନ୍ୟାସୀଙ୍କୁ ପ୍ରଣାମ କରି ଦୁଇଭାଇ ମନ ଆନନ୍ଦରେ ପେଣ୍ଡୁଲ୍‌ଟି ଧରି ଘରକୁ ଫେରିଲେ ।

ପରଦିନ ସକାଳୁ ଦୁଇଭାଇ ଶାବଳ, କୋଦାଳ, ଦୁଇଟା ଅଖା ଓ ପେଣ୍ଡୁଟି ଧରି ସହରର ଛୁଡ଼ ବଣ ଭିତରେ ପଶିଲେ । ବହୁତ ସମୟ ବୁଲିବା ପରେ ହଠାତ୍ ହରିହରର ବେଳକୁ ପେଣ୍ଡୁଟି ଗୋଟାଏ ବରଗଛ ପାଖରେ ହାତରୁ ଖସିପଡ଼ିଲା । ଏହା ଦେଖି ଦୁହେଁ କୋଦାଳ ଶାବଳ ନେଇ ସେ ଜାଗାଟା ଖୋଳିବାକୁ ଲାଗିଲେ । ଛ ସାତ ହାତ ଖୋଳିବା ପରେ ଦେଖିଲେ ଯେ ବଡ଼ ବଡ଼ ଦୁଇଟା ହଣ୍ଡାରେ ତମ୍ବା ପଇସା ଭର୍ତ୍ତି ହୋଇ ରହିଚି । ସେଠୁ ହରିହର ଅଖା କାଢ଼ି ପଇସାତକ ସେଥିରେ ପୂରାଇବାକୁ ଲାଗିଲା ଏବଂ ଫକୀର ଥରକୁଥର ପଇସା ଭର୍ତ୍ତି ଅଖା ନେଇ ତାଙ୍କ ଘରେ ଅଜାଡ଼ି ଆସିବାକୁ ଲାଗିଲା । ଦିନ ସାରା ଖଟି ଆଠବସ୍ତା ପଇସା ସେମାନେ ନିଜ ଘରକୁ ବୋହି ଆଣିଲେ । ହରିହରର ମନ ବଡ଼ ଖୁସି । ଏଇ ପଇସାକୁ ମୂଳଧନ କରି ସେମାନେ ପୁଣି ନିଜ ବ୍ୟବସାୟ ଆରମ୍ଭ କରିପାରିବେ । ମାତ୍ର ଫକୀର ଗୁମ୍ ହୋଇ ରହି କ'ଣ ଗୁଡ଼ାଏ ଭାବୁଥାଏ ।

ପଇସାତକ ଘରେ ରଖି ଓ ଖିଆପିଆ ସାରି ଦି'ଭାଇ ଶୋଇପଡ଼ିଲେ । ସକାଳୁ ଉଠି ହରିହର କହିଲା—"ଫକୀର, ଚାଲ ଲୁଗା ଗୋଦାମକୁ ଯାଇ କିଛି ଲୁଗା କିଣିଆଣି ପୁଣି ଦୋକାନ ଖୋଲିବା ।" ମାତ୍ର ଫକୀର କହିଲା— "ନାହିଁ ଭାଇ, ମୋର ଦୋକାନ କରିବାକୁ ମନନାହିଁ—ତୁମେ ଏକା ଦୋକାନ କର । ମତେ କାଠ ପେଣ୍ଡୁଟା ଦିଅ—ମୁଁ ପୁଣି ବଣ ଭିତରକୁ ଯିବି ।"

ଚମକିପଡ଼ି ହରିହର କହିଲା—"ଆରେ, ବାପୁଙ୍କ ପରି ଏସବୁ କ'ଣ କହୁଚୁ ? ବୁଦ୍ଧଙ୍କ ଦୟାରୁ ଆମେ ନିଜ ପାଦରେ ଛିଡ଼ାହେବା ପରି ମୂଳଧନ ପାଇସାରିଲୁଣି । ତା'ଛଡ଼ା ସନ୍ନ୍ୟାସୀ ବି ମନାକରିଚନ୍ତି ବେଶି ଲୋଭ ନ କରିବା ଲାଗି । ଚାଲ, ଗୋଦାମକୁ ଯାଇ ଲୁଗା କିଣିଆଣି ବେପାର କରିବା ।"

ମାତ୍ର ଫକୀର୍ କିଛି ଶୁଣିଲା ନାହିଁ । ସେତେବେଳକୁ ତା' ମୁଣ୍ଡରେ ଲୋଭ ଚଢ଼ିସାରିଲାଣି । ଏତିକ ପଇସା ତ ଜଣେ ଲୋକକୁ ନିଅଣ୍ଟ, ସେଥିରେ ସେ ଅବା ସନ୍ତୁଷ୍ଟ ହେବ କିପରି ? ତାକୁ ଦରକାର ବହୁତ ବେଶି ଧନ, ଯାହା ପାଇଲେ ଜୀବନ ସାରା ତାକୁ ଆଉ ଚିନ୍ତା କରିବାକୁ ପଡ଼ିବନାହିଁ । ତେଣୁ ଅନିଚ୍ଛାରେ ହରିହର ତାକୁ କାଠ ପେଣ୍ଡୁଟି ଦେଲା, ମାତ୍ର ବାରମ୍ବାର ସାବଧାନ କରିଦେଲା ଯେପରି ସେ ବେଶି ଲୋଭ ନକରି ଶୀଘ୍ର ଘରକୁ ଫେରିଆସେ ।

ପେଣ୍ଡୁଟି ଧରି ବଣରେ ପଶି ଫକୀର୍ ସେଦିନ ସେମାନେ ଯେଉଁ ଦିଗକୁ ଯାଇଥିଲେ ସେ ପଟକୁ ନଯାଇ ଅନ୍ୟ ଆଡ଼େ ଆଗେଇ ଚାଲିଲା । କିଛି ସମୟ ପରେ ପେଣ୍ଡୁଟି ତା' ହାତରୁ ଖସିପଡ଼ିଲା । ଫକୀର ସେହିଠାରେ ମାଟି ଖୋଳି

ଦେଖିଲା ଯେ ତା' ଭିତରେ ରହିଛି ଦୁଇ ହଣ୍ଡା ରୂପାର ଟଙ୍କା । ପ୍ରଥମେ ଏଇ ଟଙ୍କାତକ ଦେଖି ଫୁକାନ ବଡ଼ ଖୁସିହୋଇଗଲା । ମାତ୍ର ଲୋଭ ବଡ଼ ଖରାପ ଜିନିଷ । ତା' ହାତରୁ ରକ୍ଷା ପାଇବା ସହଜନୁହେଁ । ଟିକେ ପରେ ଫୁକାନ୍ ଭାବିଲା—"ରୂପା ଟଙ୍କା ତ ମିଳିଛି, ଆଉ ଥୋଡ଼ାଏ ଆଗକୁ ଗଲେ ନିଶ୍ଚେ ଏହାଠୁଁ ବି ଦାମିକା କିଛି ମିଳିଯାଇପାରେ ।" ଏହା ଭାବିକି ରୂପା ଟଙ୍କାତକ ଗୋଟାଏ ଗଛ କୋରଡ଼ ଭିତରେ ଲୁଚାଇ ରଖି, ପେଣ୍ଡୁଟି ଧରି ସେ ପୁଣି ଆଗକୁ ବଢ଼ିଲା ।

ପୁଣି ଦୁଇ ତିନି ଘଣ୍ଟା ଚାଲିବା ପରେ ପେଣ୍ଡୁଟି ଗୋଟିଏ ଉଇ ହୁଙ୍କା ପାଖରେ ହାତରୁ ଖସିପଡ଼ିଲା । ଶାବଳ କାଢି ସେଇ ଥାନଟା ଖୋଳି ଫୁକାନ୍ ପାଇଲା-ଦୁଇ ହଣ୍ଡା ସୁନାମୋହର । ସେ ଏବେ ଭାବିଲା—ଏତକ ଘେନି ଫେରିଗଲେ ଜୀବନଟା ସାରା ମୁଁ ରଜାଙ୍କ ପରି ଚଳିପାରିବି । ମାତ୍ର ପର ମୁହୂର୍ତ୍ତରେ ଲୋଭ ତା'ର ବୁଦ୍ଧିକୁ ଗ୍ରାସ କଲା । ସେ ପୁଣି ଭାବିଲା—ପ୍ରଥମେ ମିଳିଥିଲା ତମ୍ବା, ତା'ପରେ ମିଳିଲା ରୂପା, ତା'ପରେ ମିଳିଲା ସୁନା—ଆଉ ଥୋଡ଼ାଏ ଆଗକୁ ଗଲେ ଆଉ କ'ଣ ମିଳିବ ଦେଖାଯାଉ !

ଏହିପରି ଭାବି, ମୋହରଗୁଡ଼ାକୁ ସେଇ ଗାତ ଭିତରେ ପୁଣି ପୋତିଦେଇ ସେ ଆଗକୁ ମାଡ଼ିଚାଲିଲା । ଥୋଡ଼ାଏ ବାଟ ଯିବାପରେ ଗୋଟାଏ ବଡ଼ ପଥର ଉପରେ ପେଣ୍ଡୁଟା ପୁଣି ପଡ଼ିଗଲା । ଘଣ୍ଟାଏ କାଳ ବହୁତ ପରିଶ୍ରମ କରି, ଝାଳନାଳ ହୋଇ ସେଇ ବିରାଟ ପଥରଟା ଟେକି ଫୁକାନ୍ ଦେଖିଲା—ତା' ତଳେ ଥୁଆହୋଇଛି ଗୋଟାଏ ସୁନାର ମୁକୁଟ । ସେଇ ମୁକୁଟ ଦହରେ ପୁଣି ଅତି ଦାମିକା ହୀରା ମାଳା ସବୁ ଖଞ୍ଜାହୋଇଥାଏ । ଅତି ଆନନ୍ଦ ମନରେ ଫୁକାନ ମୁକୁଟଟା ଦେଖୁଥାଏ ଆଉ ମନେ ମନେ ହିସାବ କରୁଥାଏ ସେ'ଟାର ଦାମ୍ କେତେ ଟଙ୍କା ହବ । ଏତିକିବେଳେ ବହୁତ ଲୋକଙ୍କ କଣ୍ଠସ୍ୱର ଶୁଣି ସେ ଦେଖିଲା ଯେ ମନ୍ତ୍ରୀ, କୋଟୁଆଳ ଓ ଦଳେ ସୈନ୍ୟ ସେ ଆଡ଼କୁ ଆସୁଛନ୍ତି । ଅଳ୍ପ ସମୟ ମଧ୍ୟରେ ସେମାନେ ଫୁକାନ୍ ନିକଟରେ ପହଞ୍ଚିବା ମାତ୍ରେ ତା' ହାତରେ ଥିବା ମୁକୁଟଟି ଦେଖି ତାକୁ ଘେରିଯାଇ "ଏଇ ଚୋର ଧରାପଡ଼ିଛି" କହି ତା'ର ହାତ ପାଦ ବାନ୍ଧିପକାଇଲେ । ଏହା ଦେଖି ପ୍ରଥମେ ଫୁକାନ୍ କାବା ହୋଇଯାଇଥିଲା, ମାତ୍ର ସେମାନଙ୍କ କଥାରୁ ଏବେ ଜାଣିପାରିଲା ଯେ ତିନି ଚାରି ଦିନ ତଳେ ଦଳେ ଚୋର ରଜାଙ୍କ ଗନ୍ତାଘରେ ପଶି ଏଇ ମୁକୁଟଟି ଚୋରି କରି ନେଇଥିଲେ । ପରେ ଗୁପ୍ତଚର ଖବର ଆଣି ଦେଲା ଯେ ଡାକୁମାନେ ସେଇ

ମୁକୁଟଟି ଏ ବଣ ଭିତରେ ଲୁଚାଇ ରଖିଦିଅ ଓ ସୁବିଧା ଦେଖି ପରେ ନେଇଯିବେ । ଏ କଥା ଶୁଣି ମନ୍ତ୍ରୀ ଓ କୋଟୁଆଳ ଦଳେ ସୈନ୍ୟ ଧରି ମୁକୁଟଟିକୁ ଖୋଜୁଥିଲେ ।

ଫକୀରକୁ ସେଇ ଚୋରଙ୍କ ଭିତରୁ ଜଣେ ଭାବି ସେମାନେ ତାକୁ ଏପରି ମାଡ଼ ଦେଲେ ଯେ ତା'ର ମୁହଁଟା ଫୁଟବଲ୍ ପରି ଫୁଲିଗଲା ଓ ତା' ଦେହରୁ ଧାର ଧାର ହୋଇ ରକ୍ତ ବୋହିବାକୁ ଲାଗିଲା । ସେ ନିଜକୁ ଯେତେ ନିର୍ଦ୍ଦୋଷ କହିଲେ ସୁଦ୍ଧା କେହି ତା' କଥା ଶୁଣିଲେ ନାହିଁ । ତାକୁ ଘୋଷାରି ଘୋଷାରି ରଜାଙ୍କ ପାଖକୁ ବିଚାର ଲାଗି ନେଇଗଲେ । ସେଠି ସେ ସେଇ ସନ୍ନ୍ୟାସୀଙ୍କ କଥା ଓ ସେ ଦେଇଥିବା ପେଣ୍ଡୁ କଥା କହିବାରୁ ରଜା ସତ ମିଛ ବୁଝିବା ଲାଗି ସନ୍ନ୍ୟାସୀଙ୍କୁ ଡକାଇଆଣିଲେ । ସନ୍ନ୍ୟାସୀ ପହଞ୍ଚିଯିବାରୁ ତାଙ୍କଠୁ ସବୁ କଥା ଶୁଣି ଫକୀର୍ ଖଲାସ ପାଇଲା ସତ, ମାତ୍ର ସେ ସୁସ୍ଥ ହବାକୁ ପୂରା ଛ'ମାସ ସମୟ ଲାଗିଲା । ସେହିଦିନଠାରୁ ଫକୀର୍‌ର ସ୍ୱଭାବ ବଦଳିଗଲା । ଅତି ଲୋଭର ପରିଣାମ ଭୋଗି ସେ ଭଲ ମଣିଷ ହେଲା—ଆଉ ଲୋଭ କଲାନାହିଁ ।

( ୬ )

ସମୁଦ୍ର କୂଳରେ ଗୋଟିଏ ଗାଁ । ସେଇ ଗାଁରେ ଗୋଟିଏ କେଉଟର ଘର । କେଉଟ ଓ କେଉଟୁଣୀ ଗୋଟିଏ କୁଡ଼ିଆରେ ରହନ୍ତି । ସେମାନଙ୍କର ଛୁଆପିଲା କିଛି ନଥାଏ । କେଉଟ ପ୍ରତିଦିନ ମାଛ ଧରି ହାଟରେ ବିକି ଯାହା ପାଏ ସେଥିରେ ସେମାନେ ସୁଖେ ଦୁଃଖେ ଚଳିଯାଆନ୍ତି । କେଉଟଟି ବଡ଼ ଭଲମଣିଷ । ଗରିବ ବୋଲି ତା' ମନରେ ଟିକେ ହେଲେ ଦୁଃଖ ନଥାଏ । ସକାଳୁ ଉଠି ଡଙ୍ଗାଟି ଧରି ଦିନସାରା ସମୁଦ୍ରରେ ମାଛ ମାରେ ଓ ସଞ୍ଜବେଳେ ମାଛତକ ବିକି ଯାହା ଦି' ପଇସା ମିଳେ ତାକୁଇ ଧରି ଗୀତ ଗାଇ ଗାଇ ଘରକୁ ଫେରେ ।

ମାତ୍ର କେଉଟୁଣୀ ଭିନ୍ନ ଧରଣର ମଣିଷ । ଲୋଭ ଆଉ ହିଂସାରେ ତା'ର ମନଟା ଭରପୂର । ସାଇପଡ଼ିଶା କୋଠା ଘରେ ଥାଇ କେତେ ଅଏସରେ ଚଳୁଚନ୍ତି, ଏ କଥା ଦେଖି ନିଜ ଅବସ୍ଥା କଥା ଭାବିଲାବେଳକୁ ତା' ମନଟା ସବୁବେଳେ ଜଳିଯାଏ । ମଝିରେ ମଝିରେ ଏଥିପାଇଁ ସେ କେଉଟ ସାଙ୍ଗରେ ଝଗଡ଼ା

କରେ, ତାକୁ ନାନା ପ୍ରକାର ଗାଳଗୁଲଜ ହଏ । ମାତ୍ର କେଉଟର ସେଥିକି ଖାତର ନଥାଏ; ଯାହା ମିଳୁଚି ସେଥିରେ ସେ ସନ୍ତୁଷ୍ଟ ।

ସେଦିନ କ'ଣ ହେଲା କେଜାଣି କେଉଟ ଜାଲରେ ଗୋଟାଏ ହେଲେ ମାଛ ପଡ଼ିଲା ନାହିଁ । ଶେଷକୁ ସୂର୍ଯ୍ୟ ବୁଡ଼ିବା ବେଳକୁ ଜାଲଟା ଟେକିଆଣି କେଉଟ ଦେଖିଲା ସେଥିରେ ନାଲି ଓ ସୁନେଲି ରଙ୍ଗ ମିଶା ଗୋଲ ମାଛଟାଏ ପଡ଼ିଚି । ଏପରି ମାଛ କେଉଟ ତା ଜୀବନରେ କେବେ ଦେଖିନଥିଲା । ମାଛଟାକୁ ଭଲଭାବରେ ଦେଖିବା ପାଇଁ ପାଖକୁ ଆଣିବା ମାତ୍ରେ ମାଛଟା ମଣିଷ ପରି କେଉଟକୁ କହିଲା—"ମତେ ଛାଡ଼ିଦିଅ, ମୁଁ ତୁମର ବହୁତ ଉପକାର କରିବି ।" କାବା ହୋଇ କେଉଟ ପଚାରିଲା—"କି ଉପକାର କରିପାରିବୁ ?" ମାଛଟା କହିଲା—"ମୁଁ ମାଛମାନଙ୍କ ରଜା । ମୁଁ ଯାହାକୁ ଯାହା କହିବି ସେକଥା ନିଶ୍ଚେ ଫଳିବ । ତୁମେ କ'ଣ ଚାହୁଁଚ ମତେ କହ ।"

ଅନ୍ୟମାନଙ୍କ କୋଠାଘର ଦେଖି ତ କେଉଟୁଣୀର ମନ ଘାଣ୍ଟି ଚକଟି ହୁଏ, ତେଣୁ ଆଗପଛ ନବିଚାରି କେଉଟ କହିଲା—"ମୋର ଗୋଟାଏ କୋଠାଘର ଦରକାର ।" ମାଛଟି କହିଲା—"ତୁମେ ଘରେ ପହଞ୍ଚିଲାବେଳକୁ ଦେଖିବ ଯେ ତୁମ କୁଡ଼ିଆଟି ଗୋଟାଏ କୋଠାଘର ହୋଇଯାଇଥିବ । ଆଉ ଗୋଟାଏ କଥା ପୁଣି ଯଦି କିଛି ଦରକାର ହୁଏ ତେବେ ଏଇଠାରେ ଛିଡ଼ାହୋଇ ମତେ ଡାକପକାଇଲେ ମୁଁ ତୁମ ପାଖକୁ ଆସିବି । ହଉ, ଏବେ ଯାଉଚି ।" କହି ମାଛଟି ପାଣି ଭିତରେ ବୁଡ଼ିଗଲା ।

ଘରେ ପହଞ୍ଚି କେଉଟ ଦେଖିଲା ସତକୁସତ ତା' ଭଙ୍ଗା କୁଡ଼ିଆ ବଦଳରେ ଗୋଟାଏ ସୁନ୍ଦର ନୂଆ କୋଠାଘର ଠିଆହୋଇଚି । ସେ ଆଶ୍ଚର୍ଯ୍ୟ ହୋଇ ଘରଟିକୁ ଦେଖୁଚି, ଏପରି ସମୟରେ କେଉଟୁଣୀ ଭିତରୁ ଆସି ପଚାରିଲା—"ଇଏ କେମିତି ହେଲା ମୁଁ ତ କିଛି ବୁଝିପାରୁନି !" ସେଇଠୁ କେଉଟ ତାକୁ ସବୁ କଥା କହିଲା । ସବୁ ଶୁଣି କେଉଟୁଣୀ ତ କେଉଟ ଉପରେ ମହା ଖପ୍ପା । କହିଲା—"ତୁମେ କି ମୂର୍ଖ ? କୋଠାଘର ସିନା ମାଗିଲ ହେଲେ ଖାଇବ କ'ଣ ? ପିନ୍ଧିବ କ'ଣ ? ସେ କଥା ଟିକେ ଭାବିପାରିଲନାହିଁ ?"

କେଉଟ କାଇଁଲି ମାଇଁ ପଚାରିଲା—"ଆଉ କ'ଣ ମାଗିବି ତେବେ କହ ।"

କେଉଟୁଣୀ କହିଲା—"କୋଠାଘରେ ରହି ଆମେ ମାଛ ମାରିଲେ ଲୋକେ ହସିବେ । ତୁମେ ତାକୁ କହ ଆମକୁ ଗୋଟାଏ ଜମିଦାର କରିଦେବ । ତେବେ ଆମେ ଅଏସରେ ବସି ଖାଇବା ।"

କେଉଟୁଣୀ କଥା ଏଡ଼ିନପାରି ପରଦିନ କେଉଟ ସେଇ ସମୁଦ୍ର କୂଳକୁ ଯାଇ 'ହୋ ମାଛଭାଇ' ବୋଲି ଡାକ ଦେବାକ୍ଷଣି ସେଇ ମାଛଟି ଜଳରେ ଭାସିଉଠିଲା । କେଉଟ କହିଲା—"କେଉଟୁଣୀ କହୁଚି ଆମକୁ ଜମିଦାର କରିଦିଅ ।" ମାଛ କହିଲା—"ସେଇଆ ହବ ।" ଏହା କହି ସେ ପାଣି ଭିତରେ ଲୁଚିଗଲା ।

ଘରକୁ ଫେରି କେଉଟ ଦେଖିଲା ସତକୁସତ ସେମାନେ ଜମିଦାର ହୋଇଯାଇଚନ୍ତି; ଗୁମାସ୍ତା, କରଣୀ, ପାଇକ, ପୋଇଲି ଘରେ ଗଣ୍ଡାଗଣ୍ଡା । ରୋଷେଇଘରେ ଅତି ଉତ୍ତମ ଖାଦ୍ୟ ରନ୍ଧାହେଉଚି । ଏ ସବୁ ଦେଖି' ସେ ବଡ଼ ଖୁସିହୋଇଗଲା ।

କିଛି ଦିନ ପରେ ରଜାଘର ପିଆଦା ଆସିଲେ ଖଜଣା ନେବା ପାଇଁ । ଭିତରେ ଥାଇ ସେମାନଙ୍କୁ ଦେଖି କେଉଟୁଣୀ ପଚାରିଲା—"ଏମାନେ ଆମ ପାଖକୁ କାହିଁକି ଆସିଚନ୍ତି ?" ଖଜଣା ଦବା କଥା ଶୁଣି ପୁଣି ତା' ମୁଣ୍ଡକୁ ରାଗ ଚଢ଼ିଗଲା । କହିଲା—"କ'ଣ, ଆମେ ତେବେ ଏ ରଜାର ଗୋଲାମ ! ଚଞ୍ଚଳ ଯାଇ ସେଇ ମାଛକୁ ଡାକ କହ ଯେ ସେ ଆମକୁ ରଜାକରିଦବ ।"

କେଉଟ ବିଚାରି ଏ କଥାରେ ମୂଳରୁ ରାଜି ହେଉ ନଥିଲା, ମାତ୍ର କେଉଟୁଣୀ ପ୍ରଚଣ୍ଡ ପାଟିତୁଣ୍ଡ ଆରମ୍ଭ କରିବାରୁ ଏବଂ ତାକୁ ଅତି କଦର୍ଯ୍ୟ ଭାବରେ ଗାଳିଦେବାରୁ ବାଧହୋଇ ପୁଣି ସେଇ ସମୁଦ୍ର କୂଳକୁ ଯାଇ ମାଛ-ରଜାକୁ ଡାକପକାଇଲା । ଏଥର ମଧ୍ୟ ମାଛଟି ସଙ୍ଗେ ସଙ୍ଗେ ତା' ପାଖରେ ଆସି ପହଞ୍ଚିଗଲା । କେଉଟ ବଡ଼ ବିନୀତ ହୋଇ କହିଲା—"ମାଛଭାଇ, ତୁମ ଦୟାରୁ ମୁଁ ବଡ଼ ସୁଖରେ ଅଛି । ମାତ୍ର କେଉଟୁଣୀର ମନରେ ଟିକେହେଲେ ଶାନ୍ତି ନାହିଁ । ରଜାଘର ଲୋକ ଆମଠୁ ଖଜଣା ନେବାକୁ ଆସିଥିଲେ ବୋଲି ସେ ଜିଦ୍‌କରି ମତେ ତୁମ ପାଖକୁ ପଠାଇଚି ଆମକୁ ରଜା କରିଦବା ଲାଗି କହିବା ପାଇଁ ।" ମାଛଟି ଏଥର ମଧ୍ୟ କହିଲା—"ତୁମେ ଯାହା ଇଚ୍ଛା କରୁଚ ସେଇଆ ହବ ।" କହି ପୁଣି ପାଣି ଭିତରେ ମାଛ ଲୁଚିଗଲା ।

ଘରେ ପହଞ୍ଚି କେଉଟ ଦେଖିଲା ତା କୋଠା ବଦଳରେ ଗୋଟିଏ ବିରାଟ ରାଜପ୍ରାସାଦ ଠିଆହୋଇଚି । ତା' ଭିତରେ ଅସୁମାରି ଲୋକବାକ, ପାଇକ, ପିଆଦା । ସେ ପହଞ୍ଚିବାକ୍ଷଣି "ହେଇଟି ରଜା ଆସିଗଲେଣି" କହି ଦଳେ ଲୋକ ଧାଇଁଆସି ତାକୁ ମୁଣ୍ଡିଆ ମାରି ଗୋଟାଏ ସିଂହାସନ ଉପରେ ବସାଇ-ଦେଲେ । ତା' ପାଖରେ ଆଉ ଗୋଟାଏ ସାନ ସିଂହାସନରେ କେଉଟୁଣୀ ରାଣୀ ସାଜି ବସିଥାଏ । ମନ୍ତ୍ରୀ ଆସି ରଜାଙ୍କ ମୁଣ୍ଡରେ ମୁକୁଟ ପିନ୍ଧାଇ ରାଜ୍ୟର ଭଲମନ୍ଦ ଶୁଣାଇଲେ । ତା'ପରେ ଚାରଣମାନେ ଆସି ବୀଣା ବଜାଇ ତା'ର

ସ୍ତୁତି ଗାଇବାକୁ ଲାଗିଲେ । ଏ ସବୁ ଘଟଣା ଦେଖି କେଉଟ ତ ଏକାବେଳକେ କାଠପାଲଟିଗଲା ! ମାତ୍ର କେଉଟୁଣୀ ବଡ଼ ଖୁସି ।

ମାସ କେତେଟାରେ କେଉଟ ରାଜପ୍ରାସାଦର ଆଦବ କାଇଦା ସବୁ ଶିଖିଗଲା ସତ, ତଥାପି ଏଇ ଜୀବନ ତାକୁ ସୁଖଲାଗୁନଥାଏ । ପୂର୍ବର ନିୟମ କାନୁନ ନଥିବା ସ୍ୱାଧୀନ ଜୀବନ ତାକୁ ବଡ଼ ସୁହାଉଥିଲା । ଅକୂଳ ଦରିଆରେ ଡଙ୍ଗାଟି ଭସାଇ ଉପରେ ସେ ମନ ଖୁସିରେ ଗୀତଗାଉଥିଲା, ସେ ସବୁ ମନେ-ପଡ଼ିଗଲେ ତା' ଛାତି ଭିତରଟା ଘାଣ୍ଟି ଚକଟି ହୋଇଯାଏ ।

ମାତ୍ର କେଉଟୁଣୀ ବଡ଼ ଖୁସିରେ ଥାଏ । ତା' ପାଇଁ କୋଡ଼ିଏଟା ଚାକରାଣୀ ରହିଥାନ୍ତି । କିଏ ପାଦ ଘଷିଦେଉଛନ୍ତି କିଏ ମୁଣ୍ଡ କୁଣ୍ଡାଇଦେଉଛି ବା ଆଉ କିଏ ତାକୁ ଲୁଗା ପିନ୍ଧାଉଛି । ଟିକେହେଲେ ପରିଶ୍ରମ ନକରି ବସି ବସି ଦୁଧ, ଘିଅ ଆଦି ଚିକଣା ଜିନିଷ ଖାଇ ତା'ର ଦେହଟା ଖୁବ୍ ମୋଟା ହୋଇଗଲା । ଫଳରେ ସେ ସବୁବେଳେ ଗୋଟାଏ ଅସ୍ୱସ୍ତି ବୋଧକଲା ଏବଂ ରାତିରେ ତାକୁ ସହଜରେ ନିଦ ବି ହେଲା ନାହିଁ । ଏଇ କାରଣରୁ କେଉଟୁଣୀ ଏତେ ସୁଖରେ ଥାଇ ସୁଦ୍ଧା ବଡ଼ ଚିଡ଼ଚିଡ଼ା ହେବାକୁ ଲାଗିଲା ।

ଦିନେ ରାତିସାରା ଅନିଦ୍ରା ରହି ପାହାନ୍ତିଆ ପହରକୁ କେଉଟୁଣୀ ଆଖିରେ ଟିକେ ଛାଇନିଦ ଲାଗିଆସିଚି, ଏତିକିବେଳକୁ ପୂର୍ବପଟରେ ସିନ୍ଦୂର ଫାଟିଗଲା ଓ କାଉମାନେ ଉଡ଼ି କା କା ରାବ ଛାଡ଼ିଲେ । ସେଇ ଆଲୁଅ ଆଉ ରାବରେ କେଉଟୁଣୀର ନିଦ ଭାଙ୍ଗିଗଲା । ରାଗରେ ତମତମ ହୋଇ କେଉଟୁଣୀ ସଙ୍ଗେ ସଙ୍ଗେ କେଉଟକୁ ଡାକି ହୁକୁମକଲା—"ତୁମେ ଏହିକ୍ଷଣି ଯାଇ ସେ ମାଛକୁ କହ ଯେ ଚନ୍ଦ୍ର ସୂର୍ଯ୍ୟ ଆମ ହୁକୁମ ମାନି ଚଳିବେ ।" ଏ କଥା ଶୁଣି କେଉଟ ତ ପଥରପାଲଟିଗଲା । ତାକୁ ସେହିପରି ଛିଡ଼ାହୋଇଥିବା ଦେଖି କେଉଟୁଣୀ ରାଗରେ କାନ୍ଦିପକାଇ କହିଲା "ମୋ କଥା ତୁମେ ନ ମାନିଲେ ଆଜି ମୁଁ ନିଶ୍ଚେ ବିଷ ଖାଇ ମରିବି ।"

କେଉଟ ବାଧ୍ୟହୋଇ ସମୁଦ୍ର କୂଳକୁ ଯାଇ ମାଛକୁ ପୁଣି ଡାକିଲା । ଡାକିବା ମାତ୍ରେ ମାଛ ଆସି କୂଳରେ ହାଜର । ମୁହଁଟି ଶୁଖାଇ, କେଉଟ ତା' ଆଗରେ କେଉଟୁଣୀ ଶିଖାଇଦେଇଥିବା କଥାତକ କହିଦେଲା । ଶୁଣିସାରି ମାଛଟା କହିଲା—"କେଉଟୁଣୀର ଯାହା ଯୋଗ୍ୟ ସେ ତାହାହିଁ ପାଇବ ।" ଏହା କହି ସେ ପାଣି ଭିତରେ ବୁଡ଼ିଗଲା ।

ଘରକୁ ଫେରି କେଉଟ ଦେଖିଲା ଯେ ସେଇ ବିରାଟ ଚକଚକିଆ ରାଜପ୍ରାସାଦ ବଦଳରେ ତା'ର ପୁରୁଣା କୁଡ଼ିଆଟି ପୂର୍ବପରି ଛିଡ଼ାହୋଇଚି ଏବଂ କେଉଟୁଣୀ ପିଣ୍ଡାରେ ବସି ମୁଣ୍ଡରେ ହାତ ମାରି କାନ୍ଦୁଚି ।

---

## ସ୍କୁଲ ଛାତ୍ରଛାତ୍ରୀଙ୍କର ଅତି ପ୍ରିୟ ବହିବିଶ୍ୱସାହିତ୍ୟ ଗ୍ରନ୍ଥମାଳା

ଅଲିଭର ଟୁଇଷ୍ଟ
ଦୁଇଟି ନଗରୀର କାହାଣୀ
ଡେଭିଡ୍ କପରଫିଲଡ୍
ଅନେକ ଆଶା
ନିକୋଲାସ୍ ନିକଲବି
ଚକ୍ରାନ୍ତକାରୀ
କୋଡ଼ିଏବର୍ଷ ପରେ
ମଣ୍ଟିକ୍ରିଷ୍ଟୋର ରାଜା
କର୍ସିକାନ୍ ଦୁଇଭାଇ
ବିଚିତ୍ର ତାବିଜ
ମଣ୍ଡରୋଜର ଉପକଥା
ରାଜା ସଲୋମନଙ୍କ ହୀରାଖଣି
ଟମ ସଏର୍
ହକଲବେରୀ ଫିନ୍‌ର କାହାଣୀ
ରାଜପୁତ୍ର ଓ ଭିକାରୀ
ପଂପେଇନଗରୀର ଶେଷଦିନ
ଅଶୀଦିନରେ ପୃଥିବୀ ପରିକ୍ରମଣ
ହେକ୍ଟର ଗ୍ରଟର୍
ଜେଣ୍ଡାଦୁର୍ଗର ବନ୍ଦୀ
ସୁଇସ୍ ରବିନ୍‌ସନ୍
ରତ୍ନଦ୍ୱୀପ
ଭୌତିକ ବୋତଲ
ପ୍ରବାଳଦ୍ୱୀପ
ଅଦୃଶ୍ୟମାନବ
ଟାଇମ୍ ମେସିନ୍
ଚନ୍ଦ୍ରପୃଷ୍ଠରେ ପ୍ରଥମମାନବ
ଗଲିଭରର ଭ୍ରମଣକାହାଣୀ
ସାଇଲାସ୍ ମାରନର୍
ରବିନ୍‌ସନ୍ କ୍ରୁଶୋ
ରବିନ୍ ହୁଡ୍
ଟମକକାଙ୍କ କେବିନ
ମୁଦି ଓ ଗୋଲାପ
ଚନ୍ଦ୍ରକାନ୍ତମଣି
ସେରଲକ୍ ହୋମସ୍ କାହାଣୀ
ଦେବମାନବ ହରକ୍ୟୁଲିସ୍
ଭୌତିକ କୁକୁର

ପାପ ଓ ପ୍ରାୟଶ୍ଚିତ୍ତ
ବିପନ୍ନ ନାବିକର କାହାଣୀ
ରାଜା ଆର୍ଥରଙ୍କ ଯୋଦ୍ଧାଗଣ
ଆନନ୍ଦ ମଠ
ମୃଚ୍ଛକଟିକ ଓ ମୁଦ୍ରାରାକ୍ଷସ
ଶକୁନ୍ତଳା
ସେକସ୍‌ପିଅର କାହାଣୀ : ୧ମ, ୨ୟ, ୩ୟ
ପିଲାଙ୍କ କଥାସରିତ ସାଗର
ଟଲଷ୍ଟୟ କାହାଣୀ : ୧ମ, ୨ୟ, ୩ୟ
ହୋମର୍ କାହାଣୀ
ଆଣ୍ଡରସନ୍‌ଙ୍କ କାହାଣୀ
ଗର୍କୀ କାହାଣୀ : ୧ମ, ୨ୟ
ଫକୀରମୋହନଙ୍କ କାହାଣୀ : ୧ମ, ୨ୟ
ମୋପାସାଁ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ
ପ୍ରେମଚନ୍ଦ କାହାଣୀ: ୧ମ, ୨ୟ, ୩ୟ, ୪ର୍ଥ
ଆରବଦେଶର କାହାଣୀ
ସିନ୍ଦବାଦ କାହାଣୀ
ଆଲାଦୀନର କୁହୁକଦୀପ
ମହାକବି କାଳିଦାସ କାହାଣୀ ୧ମ, ୨ୟ
ପିଲାଙ୍କ ଛ'ମାଣ ଆଠଗୁଣ୍ଠ
ଗ୍ରୀମ୍‌ସଙ୍କ କାହାଣୀ : ୧ମ, ୨ୟ
ବୀରବଲ କାହାଣୀ
ରିପଭାନ୍ ଉଇଙ୍କଲ
ଦୁଃଖ ପରେ ସୁଖ
ଜାତକ କାହାଣୀ : ୧ମ, ୨ୟ, ୩ୟ, ୪ର୍ଥ
ବେତାଳ କାହାଣୀ : ୧ମ, ୨ୟ
ବାଇବେଲ କାହାଣୀ : ୧ମ, ୨ୟ
ରାମାୟଣ କାହାଣୀ
ମହାଭାରତ କାହାଣୀ
ଈଶପ କାହାଣୀ
ଗ୍ରୀସ୍‌ଦେଶର ପୁରାଣ କାହାଣୀ
ରୋମରାଜ୍ୟର ପୁରାଣକାହାଣୀ
ଆଲିବାବା କାହାଣୀ
ବିଚିତ୍ର ଦେଶରେ ଏଲିସ
ରୁସ୍ତମ କାହାଣୀ
କୃଷ୍ଣସୁନ୍ଦର

ଏହା ଛଡ଼ା ଆହୁରି ଅନେକ ଭଲ ବହି ଯାହା ସବୁ ଦେଶର ପାଠକଙ୍କୁ ସବୁବେଳେ ମୁଗ୍ଧ କରିଛି।

**ପ୍ରକାଶକ – ଗ୍ରନ୍ଥମନ୍ଦିର, ବିନୋଦବିହାରୀ, କଟକ-୨**